॥ ଶ୍ରୀହରିଃ ॥ 2090

# ଅଭୁଲା କାହାଣୀ

भूले न भुलाये ( ओड़िआ )

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବଦେବ ॥

ରାମେଶ୍ୱର ଟାଣ୍ଟିଆ

ଗୀତାପ୍ରେସ, ଗୋରଖପୁର

*Books are also available at—*

1. Gita Press, Gorakhpur Ki Pustak-Dukan, Bharatiya Towers, Badam Badi, Cuttack © (0671) 2335481, Mob. 8847856627
2. Cuttack, Railway Station, Platform No.1
3. Bhubaneswar, Railway Station, Platform No.1
4. Howrah, Railway Station, Platform No.5&18 Both.
5. Gobind Bhavan, 151, Mahatma Gandhi Road, Kolkata © (033) 40605293, 22680251; 22686894

Fourth Reprint 2019 2,000

Total 8,000

❖ **Price : ₹ 25**

**( Twenty-five Rupees only )**

Printed & Published by :

**Gita Press, Gorakhpur—273005 (INDIA)**

(a unit of Gobind Bhavan-Karyalaya, Kolkata)

Phone : (0551) 2334721, 2331250, 2331251

web : **gitapress.org** e-mail : **booksales@gitapress.org**

**Visit gitapressbookshop.in for online purchase of Gitapress publications.**

2090 Bhule Na Bhulaye (Odiya)_Section_1_Back

# ନିବେଦନ

କଥା ବା କାହାଣୀ ହେଉଛି ଶିକ୍ଷାପ୍ରଦ ବିଷୟବସ୍ତୁଗୁଡ଼ିକୁ ଅନ୍ତର ମଧ୍ୟରେ ପହଞ୍ଚାଇବାର ଏକ ଉତ୍କୃଷ୍ଟ ମାଧ୍ୟମ । ଏହିପ୍ରକାରର କେତେଗୁଡ଼ିଏ କାହାଣୀର ସଂଗ୍ରହ 'ଅଭୁଲା କାହାଣୀ'ରେ ଲିପିବଦ୍ଧ । ପ୍ରସିଦ୍ଧ ଔପନ୍ୟାସିକ ଏବଂ କଥାକାର ଶ୍ରୀ ପ୍ରେମଚନ୍ଦ୍ର ସାହିତ୍ୟ ଜଗତରେ ସୁପରିଚିତ । ଶ୍ରୀ ପ୍ରେମଚନ୍ଦ୍ରଙ୍କର କାହାଣୀ-ଗୁଡ଼ିକରେ ମାନବୀୟ ଜୀବନର ଜୀବନ୍ତ ଚିତ୍ରଣ ପାଠକଙ୍କୁ ସ୍ୱାଭାବିକ ଭାବରେ ଆକର୍ଷିତ କରିଥାଏ ଏବଂ ପାଠକମାନଙ୍କ ହୃଦୟରେ ଏକ ଛାପ ଛାଡ଼ି ଦେଇଥାଏ । ଉକ୍ତ ବିଶେଷତ୍ୱ ଏହି କାହାଣୀସଂଗ୍ରହରେ ମଧ୍ୟ ପରିଲକ୍ଷିତ ହୁଏ ।

ଯଦିଓ ଉକ୍ତ ପୁସ୍ତକରେ ଲେଖାଗୁଡ଼ିକ ଐତିହାସିକ, ସାମାଜିକ ଏବଂ ସାଂସ୍କୃତିକ ଆଧାର ଉପରେ ପର୍ଯ୍ୟବସିତ ତଥାପି ଏହାର ବିଷୟବସ୍ତୁ ମାନବୀୟ ଜୀବନର ବିଭିନ୍ନ ଅବସ୍ଥାର ସ୍ୱାଭାବିକ ଅଭିବ୍ୟକ୍ତିରେ ପରିପୂର୍ଣ୍ଣ । ଏଗୁଡ଼ିକରୁ ପରୋକ୍ଷ ଏବଂ ଅପରୋକ୍ଷରୂପେ ନୈତିକ ଶିକ୍ଷା ପ୍ରାପ୍ତ ହୋଇଥାଏ ।

ଏହାର ପ୍ରଣେତା ଶ୍ରୀରାମେଶ୍ୱରଜୀ ଟାଣ୍ଟିଆ । ସେ ଜଣେ ସମାଜସେବୀ, ଔଦ୍ୟୋଗିକ ଜଗତରେ ଜଣେ ସଫଳ ବ୍ୟବସାୟୀ, କୁଶଳ ରାଜନୀତିଜ୍ଞ ଏବଂ ସାହିତ୍ୟପ୍ରେମୀ ଥିଲେ । ସେ ରାଜସ୍ଥାନର ବାସିନ୍ଦା ହୋଇଥିବାରୁ ରାଜସ୍ଥାନର ଗ୍ରାମୀଣ ଜୀବନର ନିଖୁଣ ଚରିତ୍ର ଚିତ୍ରଣ କରିଅଛନ୍ତି ।

ପ୍ରସ୍ତୁତ ୩୨ଟି କାହାଣୀରେ ସେ ଅନେକ ରେଖାଚିତ୍ର ମଧ୍ୟ ଦେଇଅଛନ୍ତି । ଏହା ମଧ୍ୟରେ 'ଶିବ ଭାଇ' ଗଳ୍ପରେ ଏକାନ୍ନବର୍ତ୍ତୀ ପରିବାର ପ୍ରେମର ମାର୍ମିକ ଚିତ୍ରଣ କରାଯାଇଛି । ଏଠାରେ 'ଭାଗ୍ୟର ଖେଳ' ଗଳ୍ପ ହୃଦୟ ବିଦାରକ ଅଟେ । 'ଭଗବାନଙ୍କ ପ୍ରିୟ'ରେ ଏପରି ଏକ ଦର୍ଜିର କାହାଣୀ ନିହିତ, ଯାହାକୁ ହଇଜାରେ ପୀଡ଼ିତ ବ୍ୟକ୍ତିଙ୍କ ସେବା କରି ତୀର୍ଥଯାତ୍ରାର ପ୍ରତ୍ୟକ୍ଷ ଫଳ ମିଳିଛି । ଏହିପ୍ରକାର 'ଭୂରୀର ଆଇ', 'ଉତ୍ଥାନ-ପତନ', 'ପିତୃଋଣ' ଆଦି କାହାଣୀଗୁଡ଼ିକ ଆମମାନଙ୍କର ସମ୍ବେଦନଶୀଳତା ବୃଦ୍ଧି କରିବା ସହିତ ଅନୁଭବର ପ୍ରସାର କରିଥାଏ । ଏ ସମସ୍ତ ବିଂଶ ଶତାବ୍ଦୀର ମଧ୍ୟଭାଗରେ ଲେଖା ଗଳ୍ପ । ତେଣୁ ଯେଉଁ ସମସ୍ତ ଗଳ୍ପରେ ଲେଖକ ଘଟଣାଗୁଡ଼ିକର ପ୍ରାଚୀନତା ଉଲ୍ଲେଖ କରିଛନ୍ତି, ପାଠକଙ୍କ ପକ୍ଷେ ସେ ସମୟର ଚଳଣୀ ବିଚାରଯୋଗ୍ୟ ।

ଆଶା କରାଯାଏ ଏ ଗଳ୍ପଗୁଡ଼ିକ ସମସ୍ତ ପ୍ରକାରର ପାଠକ ତଥା ଆବାଳବୃଦ୍ଧବନିତାଙ୍କ ନିମନ୍ତେ ଉପାଦେୟ ହେବା ସହିତ ସେମାନଙ୍କର ମନୋରଞ୍ଜନକାରୀ ଏବଂ ଶିକ୍ଷା ତଥା ପ୍ରେରଣା ପ୍ରଦାନକାରୀ ହେବ ।

—ରାଧେଶ୍ୟାମ ଖେମକା

## —: ଅନୁକ୍ରମ :—





# ଜୀବନର ଉପଲବ୍ଧି

ଖ୍ରୀଷ୍ଟଜନ୍ମର ଶହେବର୍ଷ ପୂର୍ବେ ରୋମରେ ସିସିରୋ ନାମକ ଜଣେ ବିଚକ୍ଷଣ ବିଗ୍ଭରକ ଓ ବାଗ୍ମୀ ଥିଲେ । ନିଜର ସଦାଗ୍ଭର ସଦ୍‌ବିଗ୍ଭର ଏବଂ ନିଷ୍ଠାପୂର୍ଣ୍ଣ ଜୀବନ ହେତୁ ଜନମାନସକୁ ସେ ପ୍ରଭାବିତ କରିଥିଲେ ।

ରୋମ ସଭ୍ୟତା ଓ ସଂସ୍କୃତିର ଏହି ସମୟ ସ୍ୱର୍ଣ୍ଣ ଯୁଗ ଥିଲା । ପଶ୍ଚିମରେ ବ୍ରିଟେନ୍, ରୋମ ଓ ସ୍ପେନ୍ ଏବଂ ପୂର୍ବରେ ମେସୋପଟାମିଆ ଓ ବେବିଲୋନ୍, ତଥା ଦକ୍ଷିଣରେ ଭୂମଧ୍ୟସାଗରତଟୀୟ ଆଫ୍ରିକାର ଦେଶ ସମୂହ ବିଶାଳ ରୋମ ସାମ୍ରାଜ୍ୟର ଅଂଗ ଥିଲେ । ରୋମର ରାଜରାସ୍ତାରେ ବିଦେଶରୁ ଆଣିଥିବା ସ୍ୱର୍ଣ୍ଣ ସାମଗ୍ରୀ, ସୁନ୍ଦରୀ ନାରୀ, ଦାସମାନଙ୍କ ପ୍ରଦର୍ଶନ ସାମନ୍ତମାନେ ବଡ଼ ଗର୍ବ ସହକାରେ କରୁଥିଲେ । ସେହି ସମୟରେ ସଂସାରର ସବୁ ରାସ୍ତା ରୋମକୁ ଯାଉଥିଲା ।



ଆମୋଦ-ପ୍ରମୋଦ, ଭୋଗ-ବିଳାସ ଓ ବୁଦ୍ଧି-ବିଳାସ ରୋମର ନାଗରିକମାନଙ୍କର ଦିନଚର୍ଯ୍ୟା ଥିଲା । ତର୍କ ବିତର୍କରେ ଜଣେ ଜଣଙ୍କୁ ପରାଜିତ କରି ଦେବା ସମ୍ମାନର ବିଷୟ ଥିଲା । ଯଦି ଏଥିରେ ସମାଧାନ ହୋଇପାରୁ ନଥିଲା, ତେବେ ଦୁଇଜଣଙ୍କ ମଧ୍ୟରେ ଖଣ୍ଡା ଯୁଦ୍ଧ ହେଉଥିଲା । ସିସିରୋଙ୍କ ବୁଦ୍ଧିଦୀପ୍ତ ଭାଷଣ ଏହି ରାଜରାସ୍ତାରେ ଶୁଣାଯାଉଥିଲା । ତାଙ୍କର ସିଦ୍ଧାନ୍ତ ଥିଲା

ଯେ ଗଣତନ୍ତ୍ର ହିଁ ଶାସନ ସଂଗ୍ଚଳନର ଶ୍ରେଷ୍ଠ ପନ୍ଥା । ଜନତା ତାଙ୍କ କଥାକୁ ମନ୍ତ୍ରମୁଗ୍ଧ ହୋଇ ଶୁଣୁଥିଲେ ।

ସେହି ସମୟରେ ଇଉରୋପରେ ସମତା ଓ ବନ୍ଧୁତ୍ୱର କଥା କେହି କହୁ ନଥିଲେ । ଦାସତ୍ୱ ପ୍ରଥା ପ୍ରଚଳିତ ଥିଲା । ସୁସଭ୍ୟ ଗ୍ରୀକ୍ ଓ ରୋମରେ ମଧ୍ୟ ଦାସମାନେ ସଂପତ୍ତିରୂପେ ଗଣା ହେଉଥିଲେ । ଆରବ ଓ ଆଫ୍ରିକାରୁ ଅଣାଯାଇଥିବା ଶହ ଶହ ଦାସ, ରୋମର ସାମନ୍ତମାନଙ୍କ ଘରେ ରହୁଥିଲେ ।

ଖ୍ରୀଷ୍ଟଜନ୍ମର ପ୍ରାୟ ପଗ୍ଚଶ ବର୍ଷ ପୂର୍ବରୁ ସେନାପତି ସିଜର, ସୈନ୍ୟ ବଳରେ ରୋମର ଅଧିପତି ହୋଇଗଲେ । ତାଙ୍କୁ ଯେଉଁମାନେ ବିରୋଧ କଲେ ମୃତ୍ୟୁଦଣ୍ଡ ପାଇଲେ । ରାଜ୍ୟର ଅନ୍ୟ ପ୍ରାନ୍ତରେ ବିରୋଧର ଆଭାସକୁ କ୍ରୂରତା ସହକାରେ ଦମନ କରାଯାଉଥିଲା । ସିଜର–ମହାନ ସିଜର–ଏ ନାମ ଶୁଣିଲେ ଲୋକେ ଥରି ଉଠୁଥିଲେ ।

ସିସିରୋଙ୍କର ସିଜରଙ୍କ ସହ ବ୍ୟକ୍ତିଗତ ବିରୋଧ ନଥିଲା । ସେ ଗଣତନ୍ତ୍ରର ସିଦ୍ଧାନ୍ତକୁ ରୋମାନ ଫୋରମ୍‌ରେ ପ୍ରଗ୍ଚର କରୁଥିଲେ । ତାଙ୍କର ଲୋକପ୍ରିୟତା ଦେଖି ସିଜର ତାଙ୍କର ପ୍ରାଣ ନେଲେ ନାହିଁ, କେବଳ ରାଜଧାନୀରୁ ନିର୍ବାସିତ କରିଦେଲେ ।

ସିସରୋ ନିଜର କେତେକ ପ୍ରିୟ ଛାତ୍ର ଓ ଦାସମାନଙ୍କୁ ନେଇ ଗୋଟିଏ ଗ୍ରାମରେ ରହିଲେ ଓ ଗଣତନ୍ତ୍ର ଉପରେ ଗୋଟିଏ ପୁସ୍ତକ ରଚନା କଲେ । ମଝିରେ ମଝିରେ ସିଜରଙ୍କ ଆତଙ୍କ ଓ ଅତ୍ୟାଗ୍ଚରର ଖବର ତାଙ୍କ ନିକଟରେ ପହଞ୍ଚୁଥିଲା । ଅଧିନାୟକବାଦ ମହତ୍ତ୍ୱାକାଂକ୍ଷୀ ରାଜନେତାଙ୍କୁ ଜନ୍ମ ଦେଇଥାଏ ଏବଂ ଏହା ପରିଶେଷରେ ତାଙ୍କୁ ଭୟଙ୍କର ପରିଣାମ ଦେଇଥାଏ । ତାହା ହିଁ ହେଲା । ସିଜରଙ୍କ ବିଶ୍ୱସ୍ତ ବନ୍ଧୁ ବ୍ରୁଟସ୍ ଯିଏ ତାଙ୍କର ସେନାପତି ଥିଲେ, ସଭାସଦ୍‌ମାନଙ୍କ ଏକ ବୈଠକରେ ତାଙ୍କର ହତ୍ୟା କରି ଦେଲେ । ମରିବା ସମୟରେ ସିଜର କେବଳ ଏତିକି କହିପାରିଲେ– "ବ୍ରୁଟସ୍– ତୁମେ ମଧ୍ୟ.... ।"

ଏହାପରେ ରାଜଧାନୀରେ ଅଶାନ୍ତି ଖେଳିଗଲା । ବିଶାଳ ରୋମାନ ସାମ୍ରାଜ୍ୟରେ ଅବ୍ୟବସ୍ଥା ବଢ଼ିଯିବାର ଲକ୍ଷଣ ଦେଖା ଦେବାକୁ ଲାଗିଲା । ସେନା 'ଲେପିଡସ୍'ଙ୍କ ତରଫରେ ଥିଲେ । ରାଜକୋଷ ଓ ସରକାର 'ଏଣ୍ଟୋନି'ଙ୍କ ହାତରେ ଥିଲା, ଅଧିନାୟକବାଦ ତ୍ରସ୍ତ ଜନତା ଯୁବନେତା 'ଅକ୍ଟୋଭିୟସ୍'ଙ୍କ ପକ୍ଷରେ ଥିଲା । ଏହି ତିନି ଜଣଙ୍କ ମଧ୍ୟରେ ଯୁଦ୍ଧ ପାଇଁ ପ୍ରସ୍ତୁତି ଗ୍ଚଲିଲା ।

'ଅକ୍ଟୋଭିୟସ୍' ନିଜ ଗୁରୁ 'ସିସିରୋ'ଙ୍କୁ ରୋମ ଆସିବାକୁ ନିମନ୍ତ୍ରଣ କଲେ। ଚିଠିରେ ଲେଖିଲେ "ରୋମ ଉପରେ ଭୟାନକ ବିପତ୍ତି। ବାଲ୍ୟକାଳରୁ ମୁଁ ଆପଣଙ୍କ ଶିକ୍ଷା ଓ ସିଦ୍ଧାନ୍ତର ଛାତ୍ର ରହିଆସିଛି। ଜନତା ମୋ ସପକ୍ଷରେ। କିନ୍ତୁ ଧନ ଓ ସେନା ମୋ ନିକଟରେ ନାହିଁ। ଯଦି ଏହି ସଂକଟ କାଳରେ ଆପଣ ଆସି ମୋର ସହାୟତା କରିବେ, ତେବେ ଗଣତନ୍ତ୍ରର ସ୍ଥାପନା ସଂଭବ ହୋଇ ପାରିବ।"

ନିଜ ମାତୃଭୂମି ପ୍ରତି କର୍ତ୍ତବ୍ୟ ପାଳନ ପାଇଁ ସିସିରୋ ରୋମରେ ପହଞ୍ଚିଲେ। ବହୁତ ବର୍ଷ ପରେ ସେ ଆସିଛନ୍ତି। ତାଙ୍କର କେଶ ପକ୍ୱ, ଦନ୍ତପଂକ୍ତି ଶୂନ୍ୟ, ଶରୀର ଜର୍ଜର। କିନ୍ତୁ ଭାଷଣରେ ପୂର୍ବପରି ଓଜସ୍ୱିତା। ତାଙ୍କ ସଭାକୁ ଲକ୍ଷ ଲକ୍ଷ ସଂଖ୍ୟାରେ ରୋମାନ ନାଗରିକ ଆସିବାକୁ ଲାଗିଲେ। 'ଏଣ୍ଟୋନି', 'ଲେପିଡିସ୍' ଓ 'ଅକ୍ଟୋଭିୟସ୍' ଡରିଗଲେ କି ଜନତା କାଳେ ବିଦ୍ରୋହ କରିବ।

ପରିଶେଷରେ ରୋମ ସହର ବାହାରେ ଏ ତିନିଜଣଙ୍କ ଗୁପ୍ତ ବୈଠକ ବସିଲା। ସମସ୍ତେ ଭୟଭୀତ ଥିଲେ। ସେମାନେ ଠିକ୍ କଲେ ଯେ ତିନିଜଣ ଅଯଥା ଯୁଦ୍ଧ ନକରି ରୋମାନ ସାମ୍ରାଜ୍ୟକୁ ତିନି ଭାଗରେ ବାଣ୍ଟିବେ–ରୋମ୍, ବ୍ରିଟେନ୍ ଏବଂ ସ୍ପେନ୍ ତଥା ଆଫ୍ରିକୀୟ ଦେଶ ସମୂହ। ରାଜ୍ୟ ଚଳାଇବା ପାଇଁ ପ୍ରଚୁର ଅର୍ଥର ଆବଶ୍ୟକତା ଥିଲା। ତିନିଜଣ ନିଜ ନିଜର ଧନୀ ମିତ୍ରମାନଙ୍କୁ ମାରି ତାଙ୍କ ସଂପତ୍ତି ସଂଗ୍ରହ କରିବାର ଯୋଜନା କଲେ। ଏହାପରେ 'ଏଣ୍ଟୋନୀ' କହିଲେ, ରାଜ୍ୟ ପରିଚାଳନାରେ ସବୁଠାରୁ ବଡ଼ ବାଧକ ହେବେ ବୁଦ୍ଧିଜୀବୀମାନେ, ତେଣୁ ସେମାନଙ୍କୁ ଅବିଳମ୍ବେ ସମାପ୍ତ କରିବାକୁ ପଡ଼ିବ। ବୁଦ୍ଧିଜୀବୀମାନଙ୍କର ଗୋଟିଏ ସୂଚୀ ତିଆରି ହେଲା ଓ ସେଥିରେ ପ୍ରଥମ ନାମ 'ସିସିରୋ'ଙ୍କର ଥିଲା।

'ଅକ୍ଟୋଭିୟସ୍' ଏ ପ୍ରସ୍ତାବକୁ ଗ୍ରହଣ କଲେ ନାହିଁ। ସେ କହିଲେ "ଯାହାଙ୍କ ସହାୟତାରେ ମୁଁ ଆଜି ଏ ସ୍ଥିତିରେ ପହଞ୍ଚିଛି, ସେ ମୋର ପିତୃତୁଲ୍ୟ। ତାଙ୍କ ହତ୍ୟା ପାଇଁ ମୁଁ କିପରି ଅନୁମତି ଦେଇ ପାରିବି?" ସେଦିନ ପାଇଁ ବୈଠକ ସ୍ଥଗିତ ହେଲା। କିନ୍ତୁ ତା' ପରଦିନ ବୈଠକରେ ମହାନ୍ ବିଚାରକ ସିସିରୋଙ୍କ ହତ୍ୟା ପାଇଁ ତିନିଜଣଙ୍କର ସହମତି ହୋଇଗଲା। ଏହିରୂପେ ରୋମାନ ସାମ୍ରାଜ୍ୟ ୩ ଭାଗରେ ବିଭକ୍ତ ହେଲା।

ସିସିରୋଙ୍କୁ ସୂଚନା ମିଳିଗଲା। ଅଳ୍ପ କିଛି ଦିନ ମଧ୍ୟରେ 'ରିପବ୍ଲିକା'

ପୁସ୍ତକ ସମାପ୍ତ କରି ସେ ନିଜ ପୁଅ ଓ ବନ୍ଧୁଙ୍କୁ ସମର୍ପି ଦେଲେ । ସେମାନଙ୍କୁ କହିଲେ "ମୋ ଜୀବନର ଉଦ୍ଦେଶ୍ୟ ପୂରା ହେଲା । ମୁଁ ଆଉ ତୁମମାନଙ୍କୁ କଷ୍ଟ ଦେବି ନାହିଁ ।" ସେମାନେ ତାଙ୍କୁ ବୁଝାଇଲେ । କହିଲେ, "ଆମ ପାଖରେ ଦ୍ରୁତଗାମୀ ନୌକା ଅଛି, ଆପଣ ଅନୁମତି ଦେଲେ ଆପଣଙ୍କୁ ସକୁଶଳେ ଗ୍ରୀସ୍ ପହଞ୍ଚାଇ ଦେବୁ । ଗ୍ରୀସ୍ ଆପଣଙ୍କୁ ସ୍ୱାଗତ କରି ଗୌରବ ବୋଧ କରିବ ।"

ସିସିରୋଙ୍କ ଉତ୍ତର ଥିଲା "ମୃତ୍ୟୁ ଅବଶ୍ୟମ୍ଭାବୀ । କିଛି ଦିନ ବଂଚିବା ପାଇଁ ମାତୃଭୂମି ଛାଡ଼ିକରି ଯିବା ପାଇଁ ମୁଁ ଚାହୁଁ ନାହିଁ । ଏଇ ମାଟିରେ ମୋର ଜନ୍ମ, ମୃତ୍ୟୁ ପରେ ଏଇ ମାଟିରେ ମିଶିଗଲେ ମୋ ଆତ୍ମାକୁ ଶାନ୍ତି ମିଳିବ । ମନୁଷ୍ୟର ଜନ୍ମ ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ହୋଇଥାଏ । ଏହାର ପୂରଣ ହିଁ ଜୀବନର ସର୍ବୋଚ୍ଚ ଉପଲବ୍ଧି । ଏବେ ଆଉ ଜୀବନ ପାଇଁ ମୋହ କାହିଁକି କରିବି?"

ସୂଚନା ରାଜଧାନୀରେ ପହଂଚିଗଲା । ସିସିରୋଙ୍କ ମୁଣ୍ଡ ପାଇଁ ବହୁ ମୂଲ୍ୟ ଘୋଷଣା ହୋଇଥିଲା । କୋଡ଼ିଏ ଜଣ ସଶସ୍ତ୍ର ସିପାହୀ ତାଙ୍କୁ ବନ୍ଦୀ କରି ନେବାକୁ ଆସିଲେ । ତାଙ୍କ ବନ୍ଧୁମାନେ ତରବାରୀ ବାହାର କଲେ । "ସାବଧାନ, ରକ୍ତପାତ ହେବ ନାହିଁ" ଏହା କହି ସିସିରୋ ଆତ୍ମସମର୍ପଣ କଲେ ।

ସୈନିକମାନେ ତାଙ୍କର ମୁଣ୍ଡ ଓ ହାତ କାଟି କରି ରୋମ ନେଇଗଲେ । ରାଜଧାନୀର ଏକ ଛକରେ ସେହି ମୁଣ୍ଡ ଓ ହାତକୁ ପ୍ରଦର୍ଶନ କରାଗଲା । ସେହି ଛକରେ ହଜାର ହଜାର ଲୋକ ସିସିରୋଙ୍କର ସାରଗର୍ଭକ ଭାଷଣ ଶୁଣୁଥିଲେ ।

ସିସିରୋଙ୍କ ଆତ୍ମବଳିଦାନ ବ୍ୟର୍ଥ ଗଲା ନାହିଁ । ତାଙ୍କର ଉଦ୍ଦେଶ୍ୟ 'ଜନତନ୍ତ୍ର' ଜନମାନସରେ ଅମର ହୋଇଗଲା । ସମ୍ରାଟ ଓ ପାରିଷଦମାନଙ୍କ ଭୋଗ ଲିପ୍ସା ବଢ଼ିବାକୁ ଲାଗିଲା । ଏହି ଅତ୍ୟାଗ୍ରହ ବଢ଼ି ବଢ଼ି ସମ୍ରାଟ 'ନିରୋ'ଙ୍କ ସମୟରେ ସର୍ବାଧିକ ହୋଇଗଲା । ଅବାଧ ଭୋଗ ବିଳାସର ପରବର୍ତ୍ତୀ ସ୍ତବକ ହେଲା ପତନ । ଜନତାଙ୍କ ହୃଦୟରେ 'ଅଧିନାୟକବାଦ'ରୁ ମୁକ୍ତିର ସ୍ଫୁଲିଙ୍ଗ ପରିଶେଷରେ ଜ୍ୱାଳାମୁଖୀର ରୂପ ନେଲା । ତା'ର ଲେଲିହାନ ଶିଖାରେ 'ନିରୋ' ଭସ୍ମ ହୋଇଗଲେ । ସାମ୍ରାଜ୍ୟ ଖଣ୍ଡ ବିଖଣ୍ଡିତ ହୋଇଗଲା ଏବଂ ସାକ୍ଷୀ ରହିଲା କେବଳ ଧ୍ୱଂସାବଶେଷ ।



# ସମ୍ରାଟ ଏବଂ ସାଧୁ

ଖ୍ରୀଷ୍ଟପୂର୍ବ ୩୨୬ ବର୍ଷ ପୂର୍ବର କଥା । ଗ୍ରୀକ୍ ମହାଯୋଦ୍ଧା ଆଲେକଜାଣ୍ଡର ସିନ୍ଧୁନଦୀ କୂଳସ୍ଥିତ ପଂଜାବ ରାଜ୍ୟରେ ପହଂଚିଲେ । ସେ ଗ୍ରୀକ୍‌ରୁ ବାହାରି ବହୁତ ରାଜ୍ୟ ବିଜୟ କରି କରି ଏଠାରେ ପହଞ୍ଚିଥାନ୍ତି । ଏହା ପୂର୍ବରୁ ତୁର୍କୀ ବିଜୟ ସାରିଥାନ୍ତି । ପ୍ରତ୍ୟେକ ରାଜ୍ୟରେ ତାଙ୍କର କ୍ରୂରତା ଯୋଗୁଁ ଲୋକମାନେ କାନ୍ଦି କାନ୍ଦି ରହିଥାନ୍ତି । ତାଙ୍କ ପାଖରେ ଷାଠିଏ ହଜାର ସୈନ୍ୟ ଥିଲେ–ଯାହା ମଧ୍ୟରେ ପ୍ରଶିକ୍ଷିତ ଅଶ୍ୱାରୋହୀ, ତୀରଗ୍ଡ଼ଳକ ଓ ପଦାତିକ ସୈନ୍ୟ ଥିଲେ । ସେମାନଙ୍କ ପାଖରେ ଆଧୁନିକ ଧନୁଶର, ଭାଲା ଓ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ଥିଲା । ସେମାନେ ଗ୍ରୀସ୍‌ରୁ ବହୁତ ବର୍ଷ ପୂର୍ବରୁ ବାହାରି ଥିଲେ ଓ ବହୁତ ରାଜ୍ୟ ଜୟ କରିଥିଲେ । ସେମାନେ କୌଣସି ରାଜ୍ୟରେ ପରାସ୍ତ ହୋଇ ନଥିଲେ, ତେଣୁ ସେମାନଙ୍କ ମନୋବଳ ଦୃଢ଼ ଓ ଉଚ୍ଚ ରହିଥିଲା ।

ପଂଜାବରେ ସେ ସମୟରେ ପୁରୁ ନାମକ ଜଣେ ପରାକ୍ରମୀ ଓ ବୀର ରାଜା ଥିଲେ । ସେ ଅନ୍ୟମାନଙ୍କ ପରି ସହଜରେ ପରାସ୍ତ ହେଲେ ନାହିଁ । ଅନେକ ପ୍ରକାର ଛଳ କପଟରେ, ଦେଶଦ୍ରୋହୀ ସୈନିକ ଓ ଅଧିକାରୀମାନଙ୍କ ଠାରୁ ଗୁପ୍ତ ତଥ୍ୟ ଇତ୍ୟାଦି ହାସଲ କରି ପରିଶେଷରେ ଆଲେକଜାଣ୍ଡର ପୁରୁଙ୍କ ରାଜ୍ୟକୁ ଜୟ କରିପାରିଲେ । ବିଜିତ ପଂଜାବ ରାଜ୍ୟରେ କିଛି ବ୍ୟବସ୍ଥା କରିବା ପରେ ସେ ପାଟଳିପୁତ୍ର, ମଗଧ ଓ ବୈଶାଳୀ ରାଜ୍ୟ ଜୟ କରିବାକୁ ବାହାରିଲେ । ସେତେବେଳେ ଏହି ରାଜ୍ୟଗୁଡ଼ିକ ଅତି ସମୃଦ୍ଧ ଥିଲା ।

'ରାବି' ନଦୀ କୂଳରେ ଜଣେ ତ୍ରିକାଳଦର୍ଶୀ ସାଧୁ ଥିବାର ଆଲେକଜାଣ୍ଡର ଖବର ପାଇଲେ । ତାଙ୍କ ମନରେ ସାଧୁଙ୍କୁ ଦେଖା କରିବାର ଇଚ୍ଛା ହେଲା । ପରଦିନ ସେ ଏକ ସୁସଜ୍ଜିତ ରଥ ଓ ତାଙ୍କ ପାରିଷଦଙ୍କୁ ଦେଇ ସାଧୁଙ୍କୁ ଆଣିବାକୁ ପଠାଇଲେ । ସାଧୁଙ୍କ ଆଶ୍ରମରେ ପହଞ୍ଚି ସେମାନେ ଆଲେକଜାଣ୍ଡରଙ୍କ ସନ୍ଦେଶ ଜଣାଇଲେ ।

ସାଧୁ ମହାତ୍ମା କହିଲେ ଭାଇ, "ମୁଁ ଏଇ ଜଂଗଲରେ ରହି ଯେତେ ସମ୍ଭବ ପରମାତ୍ମାଙ୍କ ଚିନ୍ତନରେ ରହିଥାଏ । ରାଜା ମହାରାଜାଙ୍କର ମୋ ଭଳି ଲୋକଙ୍କ ସଂଗେ କି କାମ?" ସେନା ଅଧିକାରୀ ଆଶ୍ଚର୍ଯ୍ୟ ହୋଇଗଲେ । ସମ୍ରାଟ ଆଲେକଜାଣ୍ଡରଙ୍କ ନିମନ୍ତ୍ରଣକୁ ଆଜି ପର୍ଯ୍ୟନ୍ତ କେହି ଅସ୍ୱୀକାର କରିବାର ସାହସ

କରି ନାହାନ୍ତି । ତାଙ୍କର ଚିନ୍ତା ହେଲା ଯେ ସେ ଯାଇ କଣ ଉତ୍ତର ଦେବେ । ଆଲେକଜାଣ୍ଡର ଆସିବା ସମୟରେ ଏକଥା ମଧ୍ୟ କହିଥିଲେ ଯେ ତାଙ୍କୁ ଜୋର୍ ଜବରଦସ୍ତି କରିବ ନାହିଁ । ସେମାନେ ବହୁତ ଅନୁନୟ ବିନୟ କଲେ, କିନ୍ତୁ ସାଧୁ ମହାତ୍ମା ଗଲେ ନାହିଁ ।

ଡରି ଡରି ସେନା ଅଧିକାରୀ ଆଲେକଜାଣ୍ଡରଙ୍କ ଶିବିରକୁ ଆସିଲେ । ସେ ଯେତେବେଳେ ଜାଣିଲେ ଯେ ତାଙ୍କ ଆଦେଶର ଅବଜ୍ଞା ହୋଇଛି, ତାଙ୍କର ଶରୀର କ୍ରୋଧରେ ଥରିବାକୁ ଲାଗିଲା । ସେ ସାଧୁଙ୍କୁ ଜବରଦସ୍ତ ଆଣିବା ପାଇଁ ଆଦେଶ ଦେବାକୁ ଯାଉଥିଲେ, ହଠାତ୍ ତାଙ୍କର ଗ୍ରୀସ୍‌ରେ ଥିବା ଗୁରୁଙ୍କ କଥା ମନେ ପଡ଼ିଲା । ବିଶ୍ୱ ବିଜୟ ଅଭିଯାନ ପୂର୍ବରୁ ସେ କହିଥିଲେ ଯେ ଭାରତ ଏକ ବିଚିତ୍ର ଦେଶ । ଧନ, ଧାନ୍ୟ, ଶୌର୍ଯ୍ୟରେ ପରିପୂର୍ଣ୍ଣ; କିନ୍ତୁ ସେ ଦେଶରେ ବୈଭବ ଗଣାଯାଏ ତ୍ୟାଗରେ, ଭୋଗରେ ନୁହେଁ । ତୁମେ ଦେଖିବ ଯେ ସେଠାର ଲୋକମାନେ ଆଧ୍ୟାତ୍ମ ଚିନ୍ତନରେ ଅତୁଳନୀୟ । ଆଲେକଜାଣ୍ଡର ଭାବିଲେ ଯେ ତାଙ୍କ ଗୁରୁଙ୍କ କଥା ପରୀକ୍ଷା କରିବାର ଭଲ ସୁଯୋଗ ମିଳିଛି । ତା' ପର ଦିନ ଶହ ଶହ ଘୋଡ଼ା, ହାତୀ ଓ ସୈନିକଙ୍କୁ ସଂଗରେ ନେଇ ସେ ସାଧୁଙ୍କର ପର୍ଣ୍ଣକୁଟୀରରେ ପହଂଚିଲେ । ଶୀତଦିନ ଥିଲା—ଜୋର୍‌ରେ ଥଣ୍ଡା ପବନ ବହୁଥିଲା । ସେ ଦେଖିଲେ, ସାଧୁ କେବଳ ଖଣ୍ଡିଏ ଲେଙ୍ଗୁଟି ପିନ୍ଧି ଧ୍ୟାନରେ ବସିଛନ୍ତି । ସେ ତାଙ୍କର ନିକଟବର୍ତ୍ତୀ ହେବାକୁ ଲାଗିଲେ । ସେନାପତିମାନଙ୍କୁ ନେଇ ସାଧୁଙ୍କର ଅତି ନିକଟରେ ଠିଆ ହେଲେ, କିନ୍ତୁ ସାଧୁଙ୍କର ଧ୍ୟାନ ଭାଂଗିଲା ନାହିଁ । ତାଙ୍କ ମୁଖମଣ୍ଡଳରେ ଏପରି ଆଭା ବିକଶିତ ହେଉଥିଲା ଯାହାକୁ ଦେଖି ଆଲେକଜାଣ୍ଡର ଆତ୍ମବିସ୍ମୃତ ହେବା ପରି ବୋଧ ହେଲା । କିଛି ସମୟ ପରେ ସାଧୁଙ୍କ ସମାଧି ଭାଙ୍ଗିଲା । ତାଙ୍କ ସାମ୍ନାରେ ବିଭିନ୍ନ ରକମର ଫଳ, ମୂଲ୍ୟବାନ ଲୁଗା, ସୁନା, ରୁପା ଓ ରତ୍ନାଦି ସୁନାଥାଳିରେ ସଜାଇ କରି ରଖାଗଲା ।

ସାଧୁ ମହାତ୍ମା କହିଲେ, "ଭାଇ, ଭଗବାନ ପ୍ରଦତ୍ତ ତଟକା ଫଳ ବୃକ୍ଷରୁ ମତେ ସଦା ସର୍ବଦା ମିଳୁଛି, 'ରାବୀ ନଦୀ' ଦୁଗ୍ଧ ସମାନ ସ୍ୱଚ୍ଛ ଜଳ ପିଇବା ପାଇଁ ଦେଉଛି । ଦିନରେ ଭଗବାନ ସୂର୍ଯ୍ୟ ଉତ୍ତାପ ଦେଉଛନ୍ତି । ରାତିରେ କୁଟୀର ଭିତରେ ବଲ୍କଳ ଘୋଡ଼ାଇ ପଡୁଛି । ମୋର ଏ ସବୁ ଜିନିଷର କଣ ବା ଦରକାର?"

ଆଲେକଜାଣ୍ଡର କହିଲେ, "ଏତେ ଥଣ୍ଡା ପବନ ବୋହୁଛି, ଆପଣଙ୍କ ଶରୀରରେ ଖଣ୍ଡିଏ ବସ୍ତ୍ର ନାହିଁ । ଆମେମାନେ ପାଂଚ ପାଂଚ ଖଣ୍ଡ ଗରମ ଲୁଗା

ପିନ୍ଧି ସୁଦ୍ଧା ଥଣ୍ଡା ଅନୁଭବ କରୁଛୁ।'' ସାଧୁ ମହାତ୍ମା ଉତ୍ତର ଦେଲେ, ''ରାଜନ୍! ଏହା ଅଭ୍ୟାସର ଫଳ। ତୁମର ନାକ ଓ ମୁହଁକୁ ଥଣ୍ଡା ସହିବାର ଅଭ୍ୟାସ ହୋଇଛି। ସେହି ଅଭ୍ୟାସ ମୋର ସମଗ୍ର ଶରୀର ଉପରେ ହୋଇଛି।''



ଆଲେକଜାଣ୍ଡର ତାଙ୍କ ପାଖରେ ଆଣ୍ଠୁ ମାଡ଼ି ବସିଲେ। କହିଲେ, ''ମହାରାଜ! ମୋ ପାଖରେ ଅପାର ଧନରାଶି, ଅସଂଖ୍ୟ ଦାସଦାସୀ ଅଛନ୍ତି, ଏସବୁ ସତ୍ତ୍ୱେ ମୋ ମନରେ ଅଶାନ୍ତି ଲାଗି ରହିଛି ଓ ଆହୁରି ପାଇବାର ଲାଳସା ଶାନ୍ତ ହେଉ ନାହିଁ।'' ସାଧୁ ମହାତ୍ମା ଆଲେକଜାଣ୍ଡରଙ୍କ କପାଳ ଆଡ଼କୁ ଦେଖି କହିଲେ, ''ହେ ଯୁବକ ସମ୍ରାଟ, ଯାହାର ତୃଷ୍ଣା ତୃପ୍ତ ହୋଇ ନାହିଁ, ସେ ଯେତେ ଧନୀ ହେଲେ ମଧ୍ୟ ମନରେ ଭିକାରୀ ହୋଇଥାଏ। ଏଇ କଥା ତୁମ ପାଇଁ ପ୍ରଯୁଜ୍ୟ। ତୁମର ମହାନ ଆକାଂକ୍ଷା ପୂରଣ କରିବା ପାଇଁ ଏଇ କମ୍ ବୟସରେ କେତେ ରାଜ୍ୟ ଜୟ କଲ, କେତେ ମହିଳାଙ୍କୁ ବିଧବା କଲ, କେତେ ପିଲାଙ୍କୁ ଅନାଥ କଲ, କେତେ ଗ୍ରାମ ଓ ଗ୍ରୃଷ ଜମି ଉଜାଡ଼ି ପକାଇଲ, ତଥାପି ଅତୃପ୍ତ ରହିଗଲ। ଏବେ ମଧ୍ୟ ତୁମ ମନରେ ଏହି ଭୁଲ୍ ପୁନର୍ବାର କରିବାର ପ୍ରବଳ ଇଚ୍ଛା ଅଛି। କିନ୍ତୁ ଏହାର ଉଦ୍ଦେଶ୍ୟ କଣ? ଏ ଧନ ଦୌଲତ, ସେନା, ଅସ୍ତ୍ରଶସ୍ତ୍ର ତୁମର କାମରେ ଲାଗିବ ନାହିଁ। ତୁମ ଜୀବନର ଆୟୁଷକୁ ଏସବୁ ମୁହୂର୍ତ୍ତେ ମଧ୍ୟ ବଢ଼ାଇ ପାରିବେ ନାହିଁ।''

ଆଲେକଜାଣ୍ଡରଙ୍କ ସଂଗରେ ଥିବା ପାରିଷଦ ଆଶ୍ଚର୍ଯ୍ୟ ହେଉଥିଲେ କି

ଯାହାଙ୍କ ସାମ୍ନାରେ ବଡ଼ ପରାକ୍ରମୀ ଯୋଦ୍ଧା, ରାଜା ଓ ସମ୍ରାଟ ମସ୍ତକ ନତ କରନ୍ତି, ସେ ଏକ ସାଧାରଣ ସାଧୁଙ୍କ ସାମ୍ନାରେ ହାତ ଯୋଡ଼ି ନିଜର ଭବିଷ୍ୟତ ଜାଣିବା ପାଇଁ ଅପେକ୍ଷାରତ ।

ସାଧୁ ମହାତ୍ମା କିଛି ସମୟ ମୌନ ରହିବା ପରେ କହିଲେ, "ଜଣା ପଡୁଛି ତୁମେ ଜୀବନରେ ସମସ୍ତ ପ୍ରାପ୍ତିର ସୀମାରେ ପହଞ୍ଚି ଯାଇଛ । ଏବେ ତୁମର ବୟସ ୩୩ ବର୍ଷ । ଆଜିଠାରୁ ଶହେ କୋଡ଼ିଏ ଦିନ ପରେ ତୁମର ଏହି ଜୀବନ ଶେଷ ହେବ । ଦୁର୍ଯୋଗବଶତଃ ତୁମ ପରିବାର ସହିତ ତୁମର ଦେଖା ହୋଇ ପାରିବ ନାହିଁ । କାରଣ ତୁମର ମୃତ୍ୟୁ ରାସ୍ତାରେ ଯିବା ସମୟରେ ଗୋଟିଏ ଗାଁରେ ହେବ । ଜୀବନରେ ବାକି ଥିବା ଏହି କମ୍ ସମୟକୁ ଯଦି ତୁମେ ଭଗବତ୍ ଚିନ୍ତନ ଓ ଭଲ କାମରେ ବିନିଯୋଗ କର, ତେବେ ତୁମକୁ ଶାନ୍ତି ମିଳିବ । ଆଜି ପର୍ଯ୍ୟନ୍ତ ଜୋର୍ ଜୁଲମ କରି ବହୁତ ନେଇଛ । ବର୍ତ୍ତମାନ ଦୀନଦୁଃଖୀଙ୍କୁ ଦେବା ପାଇଁ ଆୟୋଜନ କର । ଏଥିରେ ତୁମର କଲ୍ୟାଣ ହେବ । ଏହା ଶାଶ୍ୱତ ସତ୍ୟ ଯେ ଧନ ଓ ଧରଣୀ କାହା ସଂଗରେ ଯାଏ ନାହିଁ । ମନୁଷ୍ୟ ଯେପରି ଖାଲି ହାତରେ ଆସିଥିଲା ସେପରି ଖାଲି ହାତରେ ସଂସାରରୁ ଯିବ ।"

ସାଧୁ ମହାତ୍ମାଙ୍କ ସଦୁପଦେଶର ପ୍ରଭାବରେ ଆଲେକଜାଣ୍ଡର ତାଙ୍କର ମହା ବିଜୟ ଅଭିଯାନରେ ପୂର୍ବଦିଗ ଯିବା ସ୍ଥଗିତ କଲେ ଏବଂ ସେହି ସ୍ଥାନରୁ ତାଙ୍କ ରାଜ୍ୟକୁ ଫେରିଯିବାର ବନ୍ଦୋବସ୍ତ କଲେ । ସାଧୁ ମହାତ୍ମାଙ୍କ ନିର୍ଦ୍ଦେଶିତ ଦିବସରେ ତାଙ୍କର ମୃତ୍ୟୁ ହେବ, ଏହି ଭୟ ତାଙ୍କ ମନରେ ରହିଥାଏ ।

କୁହାଯାଏ ଯେ ଜୀବନର ଅନ୍ତିମ ଦିନଗୁଡ଼ିକରେ ତାଙ୍କର ମନୋଭାବରେ ପରିବର୍ତ୍ତନ ଆସିଥିଲା । ସେ ପୂର୍ବର ବ୍ୟବହାର ତ୍ୟାଗ କରିଥିଲେ ।

ଇତିହାସରେ ପ୍ରସିଦ୍ଧ ଅଛି ଯେ ବେବିଲୋନ୍‌ର ଏକ ଗାଁରେ, ମୃତ୍ୟୁର ନିର୍ଦ୍ଦିଷ୍ଟ ଦିନରେ ସେ ପ୍ରମୁଖ ପାରିଷଦ ଓ ସେନାପତିମାନଙ୍କୁ ଡକାଇଲେ ଓ ଆଦେଶ ଦେଲେ ଯେ ସବୁ ଧନରତ୍ନ, ଆଭୂଷଣ, ହାତୀ-ଘୋଡ଼ା, ରଥ ଓ ତାଙ୍କର ନିଜସ୍ୱ ତରବାରୀ ତାଙ୍କ ମୃତ୍ୟୁ ପରେ, ତାଙ୍କ ଶବ ପାଖରେ ସଜାଇ ରଖା ହେବ । ଦୁଇହାତ ଶବର ବାହାରେ ରହିବ, ଯାହାକୁ ଲୋକେ ଦେଖି ଜାଣିବେ ଯେ ବିଶ୍ୱବିଜେତା ସମ୍ରାଟ ଆଲେକଜାଣ୍ଡର ନିଜର ସମସ୍ତ ବୈଭବ ପୃଥିବୀରେ ଛାଡ଼ି ଖାଲି ହାତରେ ଯାଉଛି ।



# ଗୋଗାବାପା

ରାଜସ୍ଥାନର ଶୌର୍ଯ୍ୟ ଓ ବଳିଦାନର ଇତିହାସ ବିଶ୍ୱରେ ଅଦ୍ୱିତୀୟ ମାନ୍ୟତା ପାଇଛି । ସମ୍ମାନ ଓ ସତୀତ୍ୱ ରକ୍ଷା ପାଇଁ ହଜାର ହଜାର ନାରୀ ନିଜ ସନ୍ତାନକୁ କୋଳରେ ଧରି ଜ୍ୱଳନ୍ତ ଅଗ୍ନିକୁ ପ୍ରବେଶ କରିବାର ଦୃଷ୍ଟାନ୍ତ ବିରଳ । ଭାରତ ବ୍ୟତୀତ ଏହିପରି ଆତ୍ମବିସର୍ଜନର ଉଦାହରଣ ଅନ୍ୟ କେଉଁଠାରେ ଦେଖିବାକୁ ମିଳେ ନାହିଁ । ରଣଥମ୍ଭୌର ଓ ଚିତୋର ରାଜ୍ୟରେ ଏହିପରି ଘଟଣା ଅନେକ ହୋଇଛି । ସର୍ବପ୍ରଥମ ଘଟଣା ବିକାନୀରର ଭାଦରା ଗାଁ ନିକଟ ଗୋଗାମଢ଼ିରେ ୧୦୨୪ ମସିହାରେ ହୋଇଥିଲା । ୭୦୦ କୁଳବଧୂ ସନ୍ତାନମାନଙ୍କୁ କୋଳରେ ଧରି ଚିତାକୁ ଡେଇଁ ଜଳିକରି ଭସ୍ମ ହୋଇ ଯାଇଥିଲେ । ଗଜନୀର ସେନାବାହିନୀ ଯେତେବେଳେ ଗୋଗାମଢ଼ିରେ ପହଞ୍ଚିଲେ, ତାଙ୍କୁ ପାଉଁଶଗଦା, ଅଧାପୋଡ଼ା ଶବ ଓ ଆକାଶରେ ଉଡୁଥିବା ଶାଗୁଣା ପଲ ଦେଖାଗଲା ।

ଗୋଗାମଢ଼ିର ଚୌହାନ ସରଦାର ଗୋଗାଜୀଙ୍କ ଇତିହାସ ଅଦ୍ଭୁତ । ଇଉରୋପର ୧୨ଶ ଶତାବ୍ଦୀର କ୍ରୁସେଡ଼ ଅଭିଯାନର କେତେକ ନେତା, ଭାରତର ଜୟମଲ୍ଲ, ପତ୍ତା ଏବଂ ବୀର ଚୂଡ଼ାବତ ସରଦାରଙ୍କର ବଳିଦାନ ଅପେକ୍ଷା ଗୋଗାଜୀଙ୍କ ବଳିଦାନ ଅଧିକ ଉଜ୍ଜ୍ୱଳ ଏବଂ ବିରଳ ।

ମହମ୍ମଦ ଗଜନବୀଙ୍କ ପଚ୍ଚିଶ ହଜାର ସୁସଜ୍ଜିତ ସୈନ୍ୟଙ୍କ ଭୟରେ ଲାହୋର ଓ ମୁଲତାନ୍‌ର ହିନ୍ଦୁରାଜା ପାଟିରେ ତିରଣ ନେଇ ନିଜର ସୈନ୍ୟବାହିନୀ ସହିତ ତାଙ୍କ ସଂଗରେ ମିଶିଗଲେ । ରାସ୍ତାରେ ପଡୁଥିବା ସାମନ୍ତ ରାଜାମାନଙ୍କର ଅନ୍ୟ ଗତି ନଥିଲା । ମରୁଭୂମିର ସୀମାରେ ପହଂଚିବା ବେଳକୁ ତାଙ୍କ ସେନାବାହିନୀରେ ୩୦ ହଜାର ଅଶ୍ୱାରୋହୀ ଓ ୫୦ ହଜାର ପଦାତିକ ସେନା ହୋଇଯାଇଥିଲେ ।

ମହମ୍ମଦ ଗଜନବୀ ରାସ୍ତାରେ ପଡୁଥିବା ସାମନ୍ତ ରାଜାଙ୍କ ସଂଗେ ବୁଝାମଣା କରି ସୋମନାଥଙ୍କ ପ୍ରସିଦ୍ଧ ମୂର୍ତ୍ତି ଧ୍ୱଂସ କରିବା ପାଇଁ ଆଗେଇ ଚାଲିଥିଲେ । ସେ ଗୁର୍ଜର ଦେଶର ସମୃଦ୍ଧି ବିଷୟରେ ଅବଗତ ଥିଲେ । ସେଠାକୁ ଯାଇ ଲୁଟ୍‌ପାଟ କରିବା ସେନାବାହିନୀର ଲୋଭ ଥିଲା ଓ ଗଜନବୀଙ୍କର ଥିଲା ମହାଦେବଙ୍କ ମୂର୍ତ୍ତି ଧ୍ୱଂସ କରି ଗାଜୀ ହେବାର ଇଚ୍ଛା ।

ତାଙ୍କୁ ଭାଟୀ ପ୍ରଦେଶ (ଏବେକାର ବୀକାନୀର) ଦେଇ ଜାଲୌର-ମାରବାଡ଼ ମାର୍ଗରେ ଗୁଜରାତର ସୌରାଷ୍ଟ୍ର ଯିବାର ଥିଲା । ରାସ୍ତାରେ ଗୋଗାମଢ଼ି ପଡ଼େ । ସେଠାର ବୃଦ୍ଧ ସରଦାର ଗୋଗାଙ୍କର ଯଶଗାଥା ସେ ଶୁଣିଥିଲେ ।

ଗଜନବୀ ତାଙ୍କ ସେନାପତି ସାଲାର ମହମ୍ମଦ ଓ ତିଲକ ନାମକ ଜଣେ ଦେଶ-ଧର୍ମଦ୍ରୋହୀ ଭାରତୀୟଙ୍କ ହାତରେ ମୂଲ୍ୟବାନ ହୀରା-ମଣିମୁକ୍ତାଭରା ଥାଳି ଗୋଗାବାପାଙ୍କ ପାଖକୁ ପଠାଇଲେ । ସେମାନେ କହିଲେ, ଗଜନବୀ ନିଜ ସୈନ୍ୟ ସାମନ୍ତ ନେଇ ଆପଣଙ୍କ ରାଜ୍ୟ ମଧ୍ୟ ଦେଇ ପ୍ରଭାସ ପାଟଣା ଯିବେ । ସେ ଆପଣଙ୍କର ସହାୟତା କାମନା କରୁଛନ୍ତି ।

ନବେ ବର୍ଷୀୟ ଗୋଗାବାପାଙ୍କ ଶରୀର କ୍ରୋଧରେ କମ୍ପିବାକୁ ଲାଗିଲା । ଗମ୍ଭୀର ଗର୍ଜନ କରି ସେ କହିଲେ, "ତୁମର ଗଜନବୀ ଭଗବାନ ସୋମନାଥଙ୍କ ବିଗ୍ରହ ଧ୍ୱଂସ କରିବାକୁ ଯାଉଛନ୍ତି, ସେ ପୁଣି ମୋର ସହାୟତା ମାଗୁଛନ୍ତି!" ପୁଣି ଦେଶଦ୍ରୋହୀ ତିଲକକୁ କହିଲେ, "ତୁ ହିନ୍ଦୁ ହୋଇ ତାଙ୍କର ସହାୟତା ପାଇଁ ଆସିଛୁ? ଯା–ଯାଇକରି ତୋ ମାଲିକଙ୍କୁ କହିଦେ–ଗୋଗାବାପା ରାସ୍ତା ଦେବ ନାହିଁ ।" ଏହା କହି ସେ ହୀରା-ମୋତି ଭରା ଥାଳିକୁ ଫୋପାଡ଼ି ଦେଲେ ।



ଗୋଗାବାପାଙ୍କର ଏକୋଇଶ ପୁତ୍ର, ଚଉସ୍ତରୀ ନାତି ଓ ଶହେ ପଚିଶ ଅଣନାତି ଥିଲେ । ଏହା ବ୍ୟତୀତ ତାଙ୍କ ପାଖରେ ନ'ଶହ ବୀର ସୈନିକ

ଥିଲେ । ପନ୍ଦର ଦିନ ପର୍ଯ୍ୟନ୍ତ ଯୁଦ୍ଧ ପାଇଁ ପ୍ରସ୍ତୁତି ଚାଲିଲା, ଗଡ଼ର ମରାମତି ଚାଲିଲା । ହତିଆର ସମଜା ହେଲା । ଚଣ୍ଡୀପାଠ, ମହାରୁଦ୍ର ମନ୍ତ୍ର ପାଠ ଚାଲିଲା । ଦିନେ ଦେଖାଗଲା କି ଗଜନବୀଙ୍କ ସେନା ଏକ ବିରାଟ ଅଜଗର ପରି ଗୋଗାମଢ଼ିରୁ ଆଗକୁ ବଢ଼ି ଚାଲିଛି । ସେମାନେ ଗୋଗାବାପାଙ୍କ ସଂଗରେ ଅଯଥାରେ ବୋଧହୁଏ ଝଗଡ଼ା କରିବାକୁ ଚାହୁଁ ନଥିଲେ ।

ପ୍ରଧାନ ପଣ୍ଡିତ ନନ୍ଦଦତ୍ତ କହିଲେ, ''ବାବା, ବିପଦ ଟଳିଗଲା । ଯବନ ସେନା ଆଗକୁ ବଢ଼ି ଚାଲିଗଲେ ।'' ଏହା ଶୁଣି ଗୋଗାଙ୍କର ଧଳା ନିଶ ଓ ଦାଢ଼ି ଥରିବାକୁ ଲାଗିଲା ।

ସେ କହିଲେ–''ପଣ୍ଡିତ ମହାରାଜ! ଆମ ଶରୀରରେ ଶେଷ ରକ୍ତବିନ୍ଦୁ ଥିବା ପର୍ଯ୍ୟନ୍ତ ଭଗବାନ ଶଙ୍କରଙ୍କୁ ଧ୍ୱଂସ କରିବାକୁ ଏଇ ମ୍ଲେଚ୍ଛମାନେ କିପରି ଯାଇ ପାରିବେ! ଆପଣ ଏଇ ଗଡ଼ୀରେ ରହି ମହିଳା ଓ ଶିଶୁମାନଙ୍କର ସଦ୍‌ଗତି କରାଇ ଦିଅନ୍ତୁ । ମୋ ବଂଶର କେହି ଜୀବିତ ବ୍ୟକ୍ତି ଯେମିତି ସେମାନଙ୍କ ହାତରେ ନ ପଡ଼େ ।''

ଯୁଦ୍ଧ ବାଦ୍ୟ ବାଜି ଉଠିଲା, ଘୋଡ଼ା ଏବଂ ଓଟମାନଙ୍କୁ ସଜା ଗଲା । କମଳା ରଂଗର ପୋଷାକରେ ୧୧୦୦ ବୀର ହାତରେ ତରବାରୀ, ତୀର ଓ ଫାର୍ଶା ନେଇ ଗଜନବୀଙ୍କର ଲକ୍ଷାଧିକ ସେନାଙ୍କୁ ଧ୍ୱଂସ କରିବାକୁ ଆଗେଇଲେ । ଦଶବର୍ଷରୁ ସାନ ପିଲା ଓ ସ୍ତ୍ରୀମାନଙ୍କ ପାଇଁ ଏକ ବିରାଟ ଚିତା ପ୍ରଜ୍ୱଳିତ କରାଗଲା । ପୁରୋହିତ ନନ୍ଦଦତ୍ତ ଚିତାରେ ଅଗ୍ନି ସଂଯୋଗ କଲେ । ତାଙ୍କର ଯୁବକ ପୁତ୍ର ଯୁଦ୍ଧ କରିବାକୁ ଚାଲି ଯାଇଥିଲା । ତାଙ୍କର ପତ୍ନୀ, ପୁତ୍ରବଧୂ ଓ ପିଲାମାନେ ସମସ୍ତେ ବିରାଟ ଚିତାଗ୍ନିରେ ଝାସ ଦେଇ ଦେଲେ ।

ଦୁର୍ଗ ତଳେ ଥିବା ଯବନ ସେନା ଦେଖିଲେ କ କମଳା ରଂଗର ପୋଷାକରେ ତୀର ଗତିରେ କିଛି ବୀର ଆଗେଇ ଆସୁଛନ୍ତି, 'ଆଲ୍ଲା ହୋ ଆକବର' ଧ୍ୱନି କମ୍ପି ଉଠିଲା । ଶାଗୁଆ ପଗଡ଼ି ଓ ନାଲି ଦାଢ଼ିବାଲା ସେନାପତି ହାତୀ ଉପରେ ବସି ନିଜ ସୈନ୍ୟଙ୍କୁ ନିର୍ଦ୍ଦେଶ ଦେଉଥିଲେ ।

ନବେ ବର୍ଷର ବୟୋବୃଦ୍ଧ ଗୋଗାବାପା ବିଜୁଳି ବେଗରେ ଯବନ ସୈନ୍ୟଙ୍କୁ ନାଶ କରି ପକାଉଥିଲେ । ଗଜନବୀଙ୍କ ଫୌଜରେ ଆଶଙ୍କା ଛାଇ ଯାଉଥିଲା । କିନ୍ତୁ ସଂଖ୍ୟାରେ ଓ ଯୁଦ୍ଧର ହତିଆର ସଂଖ୍ୟାରେ ଏତେ ତାରତମ୍ୟ ଥିଲା ଯେ, ଦୁଇ ଘଡ଼ି ମଧ୍ୟରେ ସମସ୍ତ ଚୌହାନ ବୀରଗତି ପ୍ରାପ୍ତ ହେଲେ ।

କିନ୍ତୁ ଶତ୍ରୁପକ୍ଷର ଦଶଗୁଣ ସୈନ୍ୟ ମରିଥିଲେ। ଗୋଗାବାପାଙ୍କ ବଂଶଧର ଭାବରେ ବଞ୍ଚି ରହିଲେ ଜଣେ ନାତି ସଜ୍ଜନ ଓ ତାଙ୍କ ପୁଅ ସାମନ୍ତ। ଏ ଦୁଇଜଣ ମହମ୍ମଦ ଗଜନବୀଙ୍କ ଆକ୍ରମଣର ଅଗ୍ରୀମ ସୂଚନା ଦେବାକୁ ପ୍ରଭାସ ପାଟଣା ଯାଇଥିଲେ। ସେମାନେ ଫେରିବା ବାଟରେ ଭୟରେ ପଳାୟନ କରୁଥିବା ଲୋକଙ୍କ ଠାରୁ ସମସ୍ତ ବିଷୟ ଶୁଣିଲେ। ପ୍ରଥମେ ସେମାନେ ଦୁଃଖରେ କାନ୍ଦିବାକୁ ଲାଗିଲେ, ତାପରେ ନିଜକୁ ସଂଭାଳି ନିଜ କର୍ତ୍ତବ୍ୟ କରିବାକୁ ଭାବିଲେ। ସାମନ୍ତ ଗୋଟିଏ ଦ୍ରୁତଗାମୀ ଓଟ ଉପରେ ବସି ଗୁର୍ଜର ନରେଶ ଭୀମଦେବଙ୍କ ପାଖକୁ ଗଲା।

ସଜ୍ଜନ ଚୌହାନ ଜାଲୌରର ମୁଖିଆଙ୍କୁ ଭେଟିବାକୁ ଗଲେ, ବହୁତ ବୁଝାଇବା ପରେ ମଧ୍ୟ ମୁଖିଆ ମାନିଲେ ନାହିଁ। ସେ କିଛି ଦିନ ପୂର୍ବରୁ ଗଜନବୀଙ୍କ ଦୂତକୁ ତାଙ୍କ ରାଜ୍ୟ ମଧ୍ୟ ଦେଇ ଯିବାର ପ୍ରତିଶ୍ରୁତି ଦେଇ ସାରିଥିଲେ। ତାଙ୍କର କହିବାର ଥିଲା କି ଗୁର୍ଜର ନରେଶ ଭୀମଦେବ ଏତେ ଗର୍ବୀ ହୋଇଯାଇଛନ୍ତି ଯେ ସେ ଆମମାନଙ୍କୁ ସମସ୍କନ୍ଧ ମାନନ୍ତି ନାହିଁ। ଏବେ ଯେବେ ତାଙ୍କ ରାଜ୍ୟ ଉପରେ ସଙ୍କଟ ପଡ଼ିଛି, ମୁଁ କାହିଁକି ତାଙ୍କୁ ସାହାଯ୍ୟ କରିବି?

ସଜ୍ଜନ ତାଙ୍କୁ ବହୁତ ବୁଝାଇଲେ। କହିଲେ, ଏଇଟା ଭୀମଦେବ ଓ ଆପଣଙ୍କ ମଧ୍ୟରେ ମନାନ୍ତରର ସମୟ ନୁହେଁ । ଦେଶ ଓ ଧର୍ମ ଉପରେ ସଙ୍କଟ ପଡ଼ିଛି, ଏହି ସମୟରେ ପାରସ୍ପରିକ ଭେଦଭାବକୁ ଭୁଲି ଯବନମାନଙ୍କୁ ନାଶ କରିବା ଉଚିତ। ଏତେ ବୁଝାଇଲା ପରେ ଜାଲୌରର ମୁଖିଆ ନ ବୁଝିବାରୁ ବ୍ୟର୍ଥରେ ସମୟ ନଷ୍ଟ ନକରି ସଜ୍ଜନ ନିଜ ଦ୍ରୁତଗାମୀ ଓଟ ଉପରେ ବସି ଗଜନବୀଙ୍କ ଫଉଜ ଆଡ଼କୁ ଆଗେଇଲେ। ତିନି ଚାରିଦିନ ଦ୍ରୁତ ଗତିରେ ଯିବାପରେ ବାଟରେ ଗଜନବୀଙ୍କ ଦୂତ ଅଳ୍ପ କେତେକ ସୈନିକଙ୍କ ସହ ଜାଲୌର ଯାଉଥିବାର ଦେଖିଲେ। ଏହି ଦୂତ ଓ ସାତ ସୈନିକଙ୍କୁ ମାରି ମୁଖିଆଙ୍କ ସ୍ୱୀକୃତିପତ୍ର, ଦୂତର ହତିଆର ଓ ଗୁପ୍ତ ପରିଚୟ ଚିହ୍ନ ନେଇ ଗଜନବୀଙ୍କ ଫଉଜ ଦିଗରେ ଯାତ୍ରା କଲେ। ଗଜନବୀଙ୍କ ଫଉଜରେ ସେତେବେଳକୁ ତିରିଶ ହଜାର ଅଶ୍ୱାରୋହୀ, ପଚିଶ ହଜାର ତୀରନ୍ଦାଜ ଓ ତିନିଶହ ହାତୀ ଥିଲେ। ଚାରିହଜାର ଓଟ ଉପରେ ଖାଦ୍ୟ ସାମଗ୍ରୀ ଓ ପାଣି ଲଦା ହୋଇଥିଲା। ଏହା ପୂର୍ବରୁ କୌଣସି ସମ୍ରାଟଙ୍କ ପାଖରେ ଏତେ ସଂଖ୍ୟାରେ ଫଉଜ ଥିବା ଜଣା ନଥିଲା। ସଜ୍ଜନ, ନାୟକଙ୍କୁ

ଚିହ୍ନ ଦେଖାଇଲେ। ତାଙ୍କୁ ଗଜନବୀଙ୍କ ପାଖକୁ ନିଆଗଲା।

ଗୋଟିଏ ଉଚ୍ଚ ଆସନରେ ଗଜନବୀ ବସିଥିଲେ। ଚାରିଆଡ଼େ ଖୋଲା ତରବାରୀ ଧରି ତା' ସିପାହିମାନେ ଠିଆ ହୋଇଥାନ୍ତି। ସଜ୍ଜନ ଦ୍ୱିଭାଷୀଙ୍କ ମାଧ୍ୟମରେ କହିଲେ ଯେ ଆପଣଙ୍କ ଦୂତ ଓ ତାଙ୍କର ରକ୍ଷକମାନଙ୍କୁ ଜାଲୌରର ମୁଖିଆ ମାରି ଦେଇଛନ୍ତି। ଜାଲୌର ମୁଖିଆ ଓ ମାରୱାଡର ରାଜା ରଣମଲ୍ଲଙ୍କ ସମ୍ମିଳିତ ସେନା ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇ ସାରିଛନ୍ତି। ଏତିକି କହି ଦୂତର ହତିଆର ଗଜନବୀଙ୍କ ପାଦତଳେ ରଖିଦେଲେ। ତିନି ଚାରିଦିନର କ୍ଳାନ୍ତ ଓ କ୍ଷୁଧାର୍ତ୍ତ ସଜ୍ଜନ ଚୌହାନର କଥାରେ ମହମ୍ମଦଙ୍କର ବିଶ୍ୱାସ ହେଲା।

ସେ ନିଜର ପରିଚୟ ଜୟସାଲମେର୍‌ର ଜଣେ ଜାଗିରଦାର ରୂପରେ ଦେଲେ ଏବଂ ଗଜନବୀଙ୍କୁ ବୁଝାଇଲେ କି ମାତ୍ର କୋଡ଼ିଏ ବାଇଶ ଦିନ ମଧ୍ୟରେ ସେ ସେମାନଙ୍କୁ ସୋମନାଥ ପହଞ୍ଚାଇ ଦେବେ। ସେହି ରାସ୍ତାରେ କୌଣସି ବାଧା ବିଘ୍ନର ସମ୍ଭାବନା ନାହିଁ। ଏହି ସାହାଯ୍ୟ ବଦଳରେ ନିଜ ଜାଗିର ପାଖରେ ଆଉ ଶହେ ଗାଁ ତାକୁ ମିଳୁ। ସେ ଏତେ ସୁନ୍ଦର ଭାବରେ ରାସ୍ତାରେ ପଡ଼ିବାକୁ ଥିବା ଗାଁ ଓ ଅନ୍ୟାନ୍ୟ ଚିହ୍ନର ବର୍ଣ୍ଣନା କଲା ଯେ ସେନାପତି ଓ ଅନ୍ୟାନ୍ୟ ମୁଖ୍ୟ ଲୋକମାନେ ତା କଥାକୁ ପ୍ରାମାଣିକ ବୋଲି ଗ୍ରହଣ କଲେ।

ତା' ପରଦିନ ଗଜନବୀ ନିଜ ଫଉଜକୁ ରାସ୍ତା ବଦଳାଇବା ପାଇଁ ହୁକୁମ ଦେଲେ। ବର୍ତ୍ତମାନ ସେମାନେ କୋଲାୟତ, ବାପ୍ ଓ ଜୟସାଲମେର୍‌ର ମରୁଭୂମି ଦେଇ ଯିବାକୁ ଲାଗିଲେ। ସଜ୍ଜନ ନିଜର ପ୍ରିୟ ଓଟ ପିଠିରେ ଚଢ଼ି ସର୍ବାଗ୍ରେ ଯିବାକୁ ଲାଗିଲା। ଚାରିଦିନର ଯାତ୍ରାପରେ ମୁଖ୍ୟ ପରିଚାଳକମାନେ ଗଣ୍ଡଗୋଳ କରିବାକୁ ଲାଗିଲେ ଯେ ଆଗରେ ବିରାଟ ମରୁଭୂମି; ସେଠାକୁ ମନୁଷ୍ୟ କଣ, ପକ୍ଷୀ ମଧ୍ୟ ଯାଇପାରିବ ନାହିଁ। ସେନାପତି ସାଲାର ମହମ୍ମଦ ସଜ୍ଜନକୁ ଧମକାଇଲେ, କିନ୍ତୁ ସେ ନିଜ କଥାରେ ଅଟଳ ରହିଲେ। ଫେରିବା ପାଇଁ ପୁଣି ପାଞ୍ଚ ଦିନ ଲାଗିଥାନ୍ତା, ତେଣୁ ସାହସ କରି ଆଗକୁ ଚାଲିଲେ। ପଞ୍ଚମ ଦିନ ଦ୍ୱିପ୍ରହର ସମୟରେ ସାମ୍ନାପଟୁ ଘୋର ଝଡ଼ର ସୂଚନା ମିଳିଲା। ମରୁଭୂମିର ଗରମ ବାଲି ଓ ପବନ ରାକ୍ଷସୀର ବିରାଟ ଆଁ ପରି ମାଡ଼ି ଆସୁଥିଲା। ଚୌହାନର ଓଟ ଜୀବନକୁ ବାଜି ଲଗାଇ ଦ୍ରୁତ ବେଗରେ ଦୌଡ଼ିବାକୁ ଲାଗିଲା। ତାଙ୍କ ପଛରେ ମହମ୍ମଦର ସେନା ବାହିନୀ। ଅଳ୍ପ



ସମୟ ମଧ୍ୟରେ ପ୍ରଳୟ ଦୃଶ୍ୟ ଉପସ୍ଥିତ ହୋଇଗଲା। ପ୍ରବଳ ବେଗରେ ଆସୁଥିବା ଗରମ ବାଲିଝଡ଼ ମନୁଷ୍ୟ ଓ ପଶୁମାନଙ୍କୁ ଅନ୍ଧ କରିଦେଲା। ଅସ୍ତବ୍ୟସ୍ତ ହୋଇ ସୈନ୍ୟମାନେ ପଛକୁ ଫେରିଲେ। କିନ୍ତୁ ପ୍ରଳୟକାରୀ ବାଲିଝଡ଼ରେ ପଶୁମାନେ ଗଭୀର ଭାବରେ ଆଘାତ ପ୍ରାପ୍ତ ହେଲେ। ଦଶହଜାର ଓଟ, ହାତୀ ଓ ସିପାହୀ ଗରମ ବାଲିରେ ପୋତି ହୋଇ ମଲେ। ଯେଉଁମାନେ ବଞ୍ଚିଥିଲେ, ସେମାନଙ୍କ ମଧ୍ୟରୁ ବହୁତଙ୍କୁ ରାତିରେ ଗାତରୁ ବାହାରିଥିବା କଳା, ହଳଦିଆ କ୍ରୋଧିତ ସାପ ଦଂଶନ କଲେ। ଏପରି ମନେ ହେଲା ଯେପରି ଶିବ ତାଙ୍କ ଗଣଙ୍କୁ ଯବନଙ୍କ ନାଶ ନିମନ୍ତେ ପଠାଇଥିଲେ।

ବୀର ଚୌହାନ ତାଙ୍କର ବିଶ୍ୱସ୍ତ ଓଟ ସହିତ ସେଇ ମରୁଭୂମିରେ ମରୁସମାଧି ନେଲେ। ତାଙ୍କ ଚେହେରାରେ ଉଲ୍ଲାସ ଓ ଆନନ୍ଦ ଥିଲା; କାରଣ ସେ ଶତ୍ରୁକୁ ଏପରି ଭାବରେ ସମାପ୍ତ କରି ଦେଇଛନ୍ତି।

ଗୋଗାବାପା ଓ ତାଙ୍କର ବଂଶଜଙ୍କର ପୁଣ୍ୟ କଥା ଏହିଠାରେ ସମାପ୍ତ ହେଲା। ତାଙ୍କର ଯଶଗାନ ଏ ପର୍ଯ୍ୟନ୍ତ ଉତ୍ତର ଭାରତର ପ୍ରତ୍ୟେକ ବ୍ୟକ୍ତିଙ୍କ ତୁଣ୍ଡରେ ଅଛି। ଭାଦ୍ର ମାସରେ ଗୋଗାମଢ଼ିରେ ସେମାନଙ୍କ ପୁଣ୍ୟସ୍ମୃତିରେ ଗୋଟିଏ ମେଳା ବସେ। ମହମ୍ମଦ ନିଜର ଅବଶିଷ୍ଟ ସେନାଙ୍କୁ କୌଣସି ପ୍ରକାରେ ଥୟ କରାଇ ଜାଲୌର-ମାରୱାଡ ରାସ୍ତାରେ ଯାଇ ସୋମନାଥ ଆକ୍ରମଣ କରିଥିଲା—ଏହା ଇତିହାସରେ ଉପଲବ୍ଧ।



# ବଲଜୀ-ଭୁରଜୀ

ଆଜିକୁ ସତୁରୀ-ଅଶୀ ବର୍ଷ ପୂର୍ବେ ରାଜସ୍ଥାନର ଶେଖାବାଟୀ ଅଂଚଳରେ ବଲଜୀ-ଭୁରଜୀ ନାମକ ଡାକୁ ସର୍ଦାରଙ୍କର ବହୁତ ନାଁ ଡାକ ଥିଲା । ଲୋକେ ତାଙ୍କ ନାଁ ଶୁଣି ଭୟରେ ଥରୁଥିଲେ । ଏମିତି ଶୁଣିବାକୁ ମିଳେ ଯେ ଥରେ ଶହେ-ଦେଢ଼ଶହ ବରଯାତ୍ରୀଙ୍କୁ ବଲଜୀ-ଭୁରଜୀଙ୍କ ପାଞ୍ଚ-ଛ ସାଥୀଙ୍କ ସାମ୍ନାରେ ନିଜର ସମସ୍ତ ଜିନିଷପତ୍ର ଓ ଧନଦୌଲତ ରଖିଦେବାକୁ ପଡ଼ିଥିଲା ।

ଯାହା କିଛି ହେଉ, ସେମାନଙ୍କର ଗୋଟିଏ ନିୟମ ଥିଲା ଯେ ସେମାନେ କେବେ ବି ବ୍ରାହ୍ମଣ, ହରିଜନ, ଗାଁର ଝିଅବୋହୂ ଅଥବା ଦୁଃଖୀଦରିଦ୍ରଙ୍କୁ ହଇରାଣ କରୁ ନଥିଲେ । ଏମାନଙ୍କ ପ୍ରତି ସେମାନେ ଏପରି ସଦୟ ଥିଲେ କି କେତେଥର ଜୀବନକୁ ବାଜି ଲଗେଇ ବା ଗିରଫଦାରୀର ଭୟ ନକରି ସେମାନେ ଗରିବ ବ୍ରାହ୍ମଣ ଘରେ ବିବାହର ଗୋଟିଏ ପ୍ରଥା ଭାତ ଭରିବାକୁ ଆସୁଥିଲେ ।

କିଛି ବର୍ଷ ପରେ ସେମାନଙ୍କ ନାଁର ଦୁରୁପଯୋଗ କରି ନାନିଆ ନାମରେ ଜଣେ ରୁଂଗା (ରାଜସ୍ଥାନର ଗୋଟିଏ ଜାତି) ନିରୀହ ଲୋକମାନଙ୍କୁ କଷ୍ଟ ଦେବାକୁ ଲାଗିଲା । ଏଇ କଥା ବଲଜୀ-ଭୁରଜୀଙ୍କ କାନରେ ପଡ଼ିଥିଲା, କିନ୍ତୁ ସେମାନେ ଏକଥାକୁ ଏତେ ଗୁରୁତ୍ୱ ଦେଇ ନଥିଲେ ।

'ବିସାଉ' ନାମକ ଗୋଟିଏ ଗାଁ ଶେଖାବାଟୀର ଉତ୍ତର କୋଣରେ ଅଛି । ସେଠାରେ ଶେଠ୍ ଖେତସୀଦାସ ପୋଦ୍ଦାର ଅତ୍ୟନ୍ତ ସରଳ ଏବଂ ଧର୍ମପ୍ରାଣ ବ୍ୟକ୍ତି ଥିଲେ । ତାଙ୍କର ଦାନପୁଣ୍ୟର ଚର୍ଚ୍ଚା ଆଖପାଖ ଅଞ୍ଚଳରେ ହେଉଥିଲା । ତାଙ୍କ ନାଁ ଲୋକମାନେ ବଡ଼ ଶ୍ରଦ୍ଧାରେ ନେଉଥିଲେ । ଅଭାବୀ ଲୋକଙ୍କୁ ସେ ଗୁପ୍ତରୂପରେ ସହାୟତା କରୁଥିଲେ । ତାଙ୍କର ସମ୍ମାନ ହେଉ ଏହା ସେ କେବେ ଆଶା କରୁ ନ ଥିଲେ ।

ଦିନେ ଶେଠଜୀ ତାଙ୍କର ପ୍ରିୟ 'ଚିଲିଆ' ଓଟ ଉପରେ ବସି ପାଖ ଗାଁକୁ ବନ୍ଧୁ ଦର୍ଶନ ପାଇଁ ଯାଉଥିଲେ । ତାଙ୍କର ସେ ଓଟର ପ୍ରଶଂସା ଆଖପାଖ ଅଂଚଳରେ ହେଉଥିଲା । ତା' ଉପରେ ଚଢ଼ି ଯାତ୍ରା କରିବା ବଡ଼ ଆରାମପ୍ରଦ ଥିଲା ଓ ସେ ଚିଲ ପରି କ୍ଷିପ୍ର ଗତିରେ ଯାଉଥିଲା । ଏହି କାରଣରୁ ତାକୁ 'ଚିଲିଆ' ନାଁ ମିଳିଥିଲା । ସାଧାରଣତଃ ଶେଠଜୀ ଯେବେ ବି ଯାତ୍ରାରେ

ଯାଉଥିଲେ, ତାଙ୍କ ସଂଗରେ ଗୋଟିଏ ଦୁଇଟି ଓଟ ବା ଘୋଡ଼ା ନେଇ ଦୁଇଗ୍ଚରି ଜଣ ସର୍ଦାର ଯାଉଥିଲେ; କିନ୍ତୁ ଦୁର୍ଯୋଗକୁ ସେ ଦିନ ସେ ଏକା ଯାତ୍ରା କରୁଥିଲେ ।

ପୌଷମାସର ସଂଧ୍ୟା । ଅଳ୍ପ ଅଳ୍ପ ଥଣ୍ଡା ପଡ଼ୁଥାଏ । ଶେଠଜୀ ଦେଖିଲେ କିଛି ଦୂରରେ ରାସ୍ତାକଡ଼ରେ ଜଣେ ଅର୍ଦ୍ଧନଗ୍ନ ବୃଦ୍ଧ ତାଙ୍କୁ ରହିବାକୁ ସଂକେତ କରୁଛି । ସେ ଓଟକୁ କ୍ଷିପ୍ର ଗତିରେ ଚଳାଇ ତା ପାଖରେ ପହଞ୍ଚିଲେ । ପଗ୍ଚରିବାରୁ ସେ କହିଲା ଯେ ସେ ପାଖ ଗାଁକୁ ଯାଉଥିଲା, ଗୋଡ଼ ମୋଡ଼ି ହୋଇଯିବାରୁ ବାଧ୍ୟ ହୋଇ ବସି ପଡ଼ିଛି । ଯଦି ଦୟା କରି ଶେଠଜୀ ତାକୁ ସଂଗରେ ନିଅନ୍ତି ତେବେ ବଡ଼ ଦୟା ହେବ ।

ଶେଠଜୀ ଓଟକୁ ବସାଇଲେ ଏବଂ ବୃଦ୍ଧଙ୍କୁ ସାହାଯ୍ୟ କରି ଓଟ ପିଠିରେ ତାଙ୍କ ପଛ ପଟେ ବସାଇଲେ । ଓଟ ଆଗକୁ ଗ୍ଚଲିଲା । କିଛି ସମୟ ପରେ ତାଙ୍କୁ ପଛରୁ ଜୋର୍‌ରେ ଧକ୍କା ହେଲା ଓ ସେ ତଳକୁ ପଡ଼ିଗଲେ । ଦୌଡ଼ୁଥିବା ଓଟ ଉପରୁ ପଡ଼ିଯିବାରୁ କିଛି କ୍ଷଣ ପାଇଁ ତାଙ୍କର ଚେତା ବୁଡ଼ିଗଲା; ତଥାପି



କୌଣସି ପ୍ରକାରେ ସେ ନିଜକୁ ସମ୍ଭାଳି ନେଲେ । ଗୋଟିଏ ପାଦର ହାଡ଼ ଭାଙ୍ଗି ଯାଇ ବହୁତ ପୀଡ଼ା ହେଲା ।

ଓଟଟି ବଡ଼ ସ୍ୱାମୀଭକ୍ତ ଓ ବୁଦ୍ଧିମାନ ଥିଲା । ବହୁତ ମାରପିଟ୍ ଓ

ଟଣାଓଟରା କଲାପରେ ମଧ୍ୟ ସେ ଆଗକୁ ଗଲା ନାହିଁ। ସେ ଜୋର୍‌ରେ ବୋବାଇବାକୁ ଲାଗିଲା।

ଶେଠଜୀ ଦେଖିଲେ ଯେ ଓଟରେ ବସିଥିବା ଲୋକର ପାଚିଲା ନିଶଦାଢ଼ି ଆଉ ନାହିଁ। ତାର ଭୟାନକ ଚେହେରା ଦେଖାଯାଉଛି। ଅସହ୍ୟ ପୀଡ଼ାରେ ବ୍ୟଥିତ ହେଲେ ମଧ୍ୟ, ତାଙ୍କୁ ବିଷୟଟି ବୁଝିବାରେ ବେଳ ଲାଗିଲାନି। ଶେଠ ତାକୁ କହିଲେ, ମୁଁ ତୁମ ପରିଚୟ ଜାଣିବାକୁ ଚାହୁଁଛି।

ଡାକୁ ତା' ନିଶରେ ହାତ ମାରି ଖୁସିରେ ଅଟ୍ଟହାସ୍ୟ କରି କହିଲା– "ମୁଁ 'ବଲଜୀ'ର ଲୋକ। ତାଙ୍କ ମନ ଏଇ ଓଟ ଉପରେ ବହୁତ ଦିନରୁ ଥିଲା, କିନ୍ତୁ ସୁବିଧା ମିଳୁ ନଥିଲା। ଆପଣ ବର୍ତ୍ତମାନ ଏ ଓଟକୁ ମୋତେ ନେଇ ଆଗକୁ ଯିବାକୁ ସଙ୍କେତ ଦିଅନ୍ତୁ, ନହେଲେ ମୋତେ ଆପଣଙ୍କୁ ଏ ଦୁନିଆଁରୁ ବିଦା କରିଦେବାକୁ ପଡ଼ିବ।

ଶେଠଜୀ ବଡ଼ ମର୍ମାହତ ହେଲେ। ବଲଜୀ ଭୁରଜୀଙ୍କ ଠାରୁ ତାଙ୍କୁ ଏପରି ବ୍ୟବହାରର ଆଶା ନଥିଲା। ତାଙ୍କୁ ବିଶ୍ୱାସ ହେଉ ନଥିଲା। ସେ କହିଲେ–"ବଲଜୀ-ଭୁରଜୀ ଡାକୁ ସତ, କିନ୍ତୁ ସେମାନେ ଯେ ଏପରି ଧୋକାବାଜି କରନ୍ତି ଏ କଥା ମୁଁ କେବେ ଶୁଣି ନଥିଲି। ମତେ ଏ କଥାରେ କିଛି ସନ୍ଦେହ ହେଉଛି। ଯାହା ହେଲା ହେଲା, ତୁମେ ଯିଏ ହୁଅ ନା କାହିଁକି, ତୁମକୁ ଦେବୀ ମାତାଙ୍କ ରାଣ। ଆଜିର ଏ ଘଟଣା କାହାକୁ କହିବନି। ତୁମକୁ ଓଟ ସହିତ ମୁଁ ଶହେ ଦୁଇଶହ ଟଙ୍କା ମଧ୍ୟ ଦେଉଛି। ସର୍ତ୍ତ ଏତିକି ଯେ ଏ ବିଷୟରେ ତୁମେ କାହାକୁ କହିବନି।" ଡାକୁ ଭାବିଲା, ଏ ତ ଜଣେ ଅଦ୍ଭୁତ ବ୍ୟକ୍ତି! ଓଟ ସଙ୍ଗେ ଆହୁରି ଟଙ୍କା ବି ଦେବାକୁ ରାଜି। ସେ ତାଙ୍କୁ ସର୍ତ୍ତର ରହସ୍ୟ ବୁଝାଇବାକୁ କହିଲା। ଶେଠଜୀ କହିଲେ, "ଏ ଘଟଣା ଯଦି ପ୍ରଘଟ ହୁଏ, ତେବେ ଲୋକମାନେ ଅପରିଚିତ ବୁଢ଼ା ବା ଅସହାୟ ବାଟୋଇକୁ ସାହାଯ୍ୟ କରିବାକୁ ଡରିବେ। ତାଙ୍କୁ ଏଥିରେ ଧୋକା ବା ଠକାମିର ଭୟ ରହିବ। ମଣିଷକୁ ମଣିଷ ଉପରୁ ବିଶ୍ୱାସ ତୁଟିଯିବ। ତୁମେ ବେକାରରେ ଏତେ ସବୁ କଲ। ତୁମକୁ ଯଦି ଓଟ ଏତେ ପସନ୍ଦ ଥିଲା, ମୋତେ ମାଗି ନେଇ ଯାଇଥାନ୍ତ।"

ଏତେ କଥା ଶୁଣିବା ପରେ ମଧ୍ୟ ଡାକୁ ଶେଠଜୀଙ୍କୁ ଓଟକୁ ନିର୍ଦ୍ଦେଶ

ଦେବାକୁ କହିଲା । ଶେଠଜୀ ନିର୍ଦ୍ଦେଶ ଦେଲେ । ଓଟ ଚ୍ୱଲିଲା ଆଗକୁ । ଡାକୁ ତାଙ୍କୁ ସେହିପରି ଆଘାତପ୍ରାପ୍ତ ଅବସ୍ଥାରେ ସେ ଭୟଙ୍କର ଜଂଗଲରେ ଛାଡ଼ି ଚ୍ୱଲିଗଲା । ପରଦିନ ଶେଠଜୀଙ୍କୁ ଖୋଜିବାକୁ ଆସି ଲୋକମାନେ ପହଞ୍ଚି ତାଙ୍କୁ ଘରକୁ ନେଇଗଲେ । କଣ ହେଲା, ଓଟ କୁଆଡ଼େ ଗଲା, ଏସବୁ କଥାକୁ ଶେଠଜୀ ବାଆଁରେଇ ଦେଲେ ।

ସତ କେବେହେଲେ ଲୁଚି ରହେ ନାହିଁ । ବଲଜୀ-ଭୁରଜୀଙ୍କୁ ଶେଠଜୀଙ୍କ ଓଟ ଚ୍ୱେରି ହେବା ଖବର ମିଳିଗଲା ଏବଂ ନାନିଆ ରୁଙ୍ଗା ପାଖରେ ଓଟ ଅଛି ବୋଲି ସେମାନେ ଜାଣିଗଲେ ।

କେତେ ଦିନ ପରେ ଦେଖାଗଲା ଯେ ଶେଠଜୀଙ୍କ ଓଟ ତାଙ୍କ ଅଗଣାରେ ବନ୍ଧା ହୋଇଛି । ତା' ଗଳାରେ ଖଣ୍ଡେ ଚିଠି ଥିଲା । ଲେଖାଥିଲା ''ଶେଠ୍ ଖେତସୀ ଦାସଙ୍କୁ ବଲଜୀ-ଭୁରଜୀଙ୍କ ଉପହାର । ସେମାନେ ଡାକୁ ହୋଇ ପାରନ୍ତି, କିନ୍ତୁ ଠକ ନୁହନ୍ତି ।'' ଠିକ୍ ତା'ପରଦିନ ନାନିଆ ରୁଙ୍ଗାର ଲାସ୍ ଝୁନ୍‌ଝୁନ୍ ପାଖ ପାହାଡ଼ରୁ ମିଳିଲା ।



# ଶିବ ଭାଇ

ଏପରି କେତେକ ବ୍ୟକ୍ତି ଅଛନ୍ତି ଯାହାଙ୍କ ଉଦାହରଣ ପ୍ରତି ସମାଜରେ, ପ୍ରତି ଦେଶରେ ଓ ପ୍ରତି ସମୟରେ ମିଳିଥାଏ । ମୁଁ ଶରତ ବାବୁଙ୍କ ଉପନ୍ୟାସ 'ବିରାଜ ବହୂ' ପଢୁଥିଲି । ସେଥିରେ ଥିବା ନୀଳାମ୍ବର ଚକ୍ରବର୍ତ୍ତୀ ପ୍ରସଙ୍ଗରେ ମୋର ଶିବଜୀରାମଙ୍କ ସ୍ମରଣ ହେଲା । ସେ ରାଜସ୍ଥାନର ବାସିନ୍ଦା ଥିଲେ । ଯଦି କେହି ସେହି ଅଂଚଳରେ 'ବିରାଜ ବହୂ' ପୁସ୍ତକର ଲେଖକ ହୋଇଥାନ୍ତା ତେବେ ପାଠକମାନଙ୍କୁ ନୀଳାମ୍ବର ଚରିତ୍ରମଧ୍ୟରେ ଶିବଜୀରାମଙ୍କ ଭ୍ରମ ହୋଇଥାନ୍ତା ।

ଏହି କଥାର ନାୟକଙ୍କ ଜନ୍ମ ଶହେ ବର୍ଷ ପୂର୍ବେ ଶେଖାବାଟୀର ଏକ ଗାଁରେ ହୋଇଥିଲା । ସାଧାରଣ ସମ୍ପନ୍ନ ପରିବାର । ଘରେ ମା ଓ ଦୁଇଭାଇ । ମା ଶିକ୍ଷିତା ନହେଲେ ମଧ୍ୟ ବହୁତ ଚତୁର ଓ ବୁଦ୍ଧିମତୀ ଥିଲେ । ପତିଙ୍କ ଦେହାନ୍ତ ପରେ ପୁଅମାନଙ୍କୁ ଭଲ ଶିକ୍ଷା ଦେଇଥିଲେ ଏବଂ ଘରଦ୍ୱାର ସଂପତ୍ତି ଅତୁଟ ରଖିଥିଲେ । ଦୁଇ ଭାଇଙ୍କର ପରସ୍ପର ପ୍ରେମ ଦେଖି ଲୋକେ ତାଙ୍କୁ ରାମ ଲକ୍ଷ୍ମଣଙ୍କ ଯୋଡ଼ି କହୁଥିଲେ । ସେ ସମୟର ପ୍ରଥା ଅନୁଯାୟୀ ଉଭୟଙ୍କର ବାଲ୍ୟ ବିବାହ ହୋଇଥିଲା ।

ଦିନେ ବଡ଼ଭାଇ ରାମକିଷନ ମୁମ୍ବାଇ ଯାଇ କାମ କରିବାର ବିଗ୍ରର ମାତାଙ୍କ ସମ୍ମୁଖରେ ରଖିଲା । ତାର ବୟସ ମାତ୍ର କୋଡ଼ିଏ । ସେ ପୂର୍ବରୁ କେବେ ବିଦେଶ ଯାଇ ନଥିଲା । ଯାତ୍ରା ବଡ଼ କଷ୍ଟଦାୟକ ଥିଲା । ବାପା ଜୀବିତ ନଥିଲେ–ତାଙ୍କର ଆଶୀର୍ବାଦ ମିଳିବାର ସଂଭାବନା ନଥିଲା । ଯାହା କିଛି ସମ୍ବଳ ଥିଲା, ବିଗତ କେତେବର୍ଷରେ ଧୀରେ ଧୀରେ ଖର୍ଚ୍ଚ ହୋଇ ଯାଇଥିଲା । ତେଣୁ ମା ମନରେ ଗଭୀର ଦୁଃଖ ରଖି ପୁଅକୁ ବମ୍ବେ ଯିବା ପାଇଁ ଆଜ୍ଞା ଦେଲେ । ସାନଭାଇ ଶିବଜୀରାମ ଓ ନିଜର ପତ୍ନୀକୁ ମାତାଙ୍କ ସେବା କରିବା ପାଇଁ ଘରେ ଛାଡ଼ିକରି ସେ ମୁମ୍ବାଇ ଅଭିମୁଖେ ଯାତ୍ରା କଲା । ଶିବଜୀରାମ ପାଇଁ କିଛି କାମଧନ୍ଦା ନଥିଲା, ସେ ବଡ଼ଭାଇର ଛୋଟ ପୁଅକୁ ଧରି ଖେଳାବୁଲା କଲା । ଯଦି ଗାଁକୁ କେହି ସାଧୁ ସନ୍ଥ ଆସୁଥିଲେ, ତାଙ୍କର ସେବା ପାଇଁ ସେ ସର୍ବପ୍ରଥମେ ବାହାରି ପଡୁଥିଲା ।

ତିନି ମାଇଲ ଦୂରରେ ଜଙ୍ଗଲରେ ଗୋଟିଏ କୂଅ ଥିଲା । ସକାଳୁ ଶୀଘ୍ର ଉଠି ନିତ୍ୟକର୍ମ ପାଇଁ ସେଠାକୁ ଯାଉଥିଲା । ସଂଗରେ ୪/୫ ସେର ଶସ୍ୟ ନେଇ ଯାଉଥିଲା ଓ ସେଠାରେ ପକ୍ଷୀମାନଙ୍କୁ ଖାଇବାକୁ ଦେଉଥିଲା । ସେଠାରୁ ଫେରି ତାଙ୍କ ନିଜର ୨ଟି ଗାଈଙ୍କୁ ଦାନାପାଣି ଦେଉଥିଲା । ତାଙ୍କ ଗୁହାଳ ସଫା କରୁଥିଲା । ଏହାପରେ ନିଜେ ସ୍ନାନ ସାରି ପ୍ରଭୁ ଶ୍ରୀରାମଙ୍କ ମନ୍ଦିରକୁ ଯାଉଥିଲା । ସେ ତାଙ୍କର କୁଳଦେବତା ।

ଗାଁରେ ରହି ସେ ବୈଦ୍ୟ ଚିକିତ୍ସା ଭଲଭାବେ ଶିଖି ଯାଇଥିଲା । ସେ ଗାଁର ଗରିବ ରୋଗୀମାନଙ୍କର ଚିକିତ୍ସା କରୁଥିଲା ଓ ବହୁତ ଗରିବ ରୋଗୀଙ୍କୁ ଔଷଧ ଓ ପଥ୍ୟ ନିଜ ହାତରୁ ଦେଉଥିଲା । ଏସବୁ ବ୍ୟତୀତ ସେ ଆଉ ଏକ ନିୟମ ମାନୁଥିଲା । ଗାଁରେ କାହାର ମୃତ୍ୟୁ ହୋଇଗଲେ ସେ ନିଶ୍ଚୟ ସେଠାରେ ପହଂଚି ଯାଉଥିଲା ଓ ମୃତାହ କର୍ମ ସବୁରେ ମନଯୋଗ ସହିତ ଯୋଗଦାନ କରୁଥିଲା । ବୈଶାଖ ଜ୍ୟେଷ୍ଠର ଉତ୍ତପ୍ତ ପରିବେଶ ହେଉ ବା ପୌଷ ମାସର ଥଣ୍ଡା–ଏମିତି ନ ଥିଲା କି ଶିବଜୀରାମ ଏପରି କାର୍ଯ୍ୟରେ ଉପସ୍ଥିତ ନ ଥିବ ।

ସେ ସମୟରେ ଛୁଆଁ-ଅଛୁଆଁର ବହୁତ ପ୍ରଚଳନ ଥିଲା । କିନ୍ତୁ ତାର ଧାରଣା ଥିଲା ଯେ ମୃତ୍ୟୁ ପରେ ଭଗବାନଙ୍କ ଜ୍ୟୋତିରେ ମୃତକର ଆତ୍ମା ମିଶିଯାଏ ଏବଂ ମୃତକର କୌଣସି ଜାତି ନଥାଏ । ତା'ର ଏପରି ଚିନ୍ତାଧାରା ଯୋଗୁଁ ଗରିବ ହରିଜନଙ୍କ ଘରେ ବି ଏପରି ଅବସ୍ଥାରେ ସେ ପହଞ୍ଚି ଯାଉଥିଲା । ତା' ନିଜ ଗାଁ ଓ ଆଖପାଖ ଗାଁର ଲୋକେ ତାକୁ 'ଶିବ ଭାଇ' ବୋଲି ଡାକୁଥିଲେ ।

ମା' ଧାର୍ମିକ ଚିନ୍ତାଧାରାର ଥିଲେ । ତାଙ୍କର ପ୍ରେରଣାରେ ଶିବର ଏସବୁ କାମରେ ରୁଚି ଥିଲା । କିନ୍ତୁ ତା' ସ୍ତ୍ରୀ ଓ ଭାଉଜ ଏସବୁ କାମ ପସନ୍ଦ କରୁ ନଥିଲେ ।

ଗାଁର କେତେକ ସୁସ୍ଥ ଲୋକ ବି ବେମାରୀ ବା କଷ୍ଟର ବାହାନା କରି ତା'ଠାରୁ ପଇସା ପତ୍ର ଠକି କରି ନେଇ ଯାଉଥିଲେ । ଶିବଜୀରାମଙ୍କ ପାଖକୁ ଆସି କେହି ଖାଲି ହାତରେ ଫେରି ଯାଉ ନଥିଲେ । ବଡ଼ଭାଇ ୩/ ୪ ବର୍ଷ ଅନ୍ତରରେ ଗାଁକୁ ଆସୁଥିଲେ ଓ ଦୁଇ ତିନିମାସ ରହି ମୁମ୍ବାଇ

ଫେରି ଯାଉଥିଲେ । ମା'ଙ୍କ ଦେହାନ୍ତ ହେବା ପରେ ନିଜ ପତ୍ନୀ ଓ ପୁତ୍ରକୁ ସଂଗରେ ନେଇ ମୁମ୍ବାଇ ଚାଲିଗଲେ । ଗାଁରେ କେବଳ ଶିବ ଭାଇ, ତାଙ୍କ ପତ୍ନୀ ଓ ପିଲାମାନେ ରହିଲେ । ୧୯୦୧ ମସିହାରେ ମୁମ୍ବାଇରେ ମହାମାରୀରେ ରାମକିଷନଙ୍କ ମୃତ୍ୟୁ ହୋଇଗଲା । ତା' ପତ୍ନୀ ଓ ୧୪ ବର୍ଷର ପୁତ୍ର ରାମଦୟାଲ ଦୁଃଖରେ ଭାଂଗିପଡ଼ି ଗାଁକୁ ଫେରିଆସିଲେ । ଶିବଜୀରାମ କେବେ ରୋଜଗାର କରି ନଥିଲା । ଏବେ ସମସ୍ତଙ୍କ ଭାର ତା' ଉପରେ ପଡ଼ିଲା । ମୁମ୍ବାଇ ନଯାଇ ଗାଁରେ ଡାଲିଚାଉଳ ଦୋକାନ କରି, ପୁତୁରା ରାମଦୟାଲକୁ ସାଂଗରେ ନେଇ ତାକୁ କାମ ଶିଖାଇବାକୁ ଲାଗିଲା । ଦୋକାନ ଚଳାଇବା ପାଇଁ ଯେଉଁ ବିଦ୍ୟା ବୁଦ୍ଧି ଓ ଚାଲାକି ଦରକାର ତାହାର ଘୋର ଅଭାବ ଥିଲା ଶିବଜୀରାମ ପାଖରେ । ଲୋକମାନେ ଉଧାର ନେଇ ଆଉ ଫେରାଉ ନଥିଲେ । ସେମାନେ ଜାଣିଥିଲେ ଯେ ଶିବଜୀରାମ କେବେ ବି କଚେରୀ ଯାଇ ଅନାଦେୟ ପାଇଁ ନାଲିଶ କରିବ ନାହିଁ । ପରିଶେଷରେ ୨/୩ ବର୍ଷରେ ପ୍ରଭୂତ କ୍ଷତି ହେବାରୁ ଦୋକାନ ବନ୍ଦ କରାଗଲା ।

ଇତିମଧ୍ୟରେ ରାମଦୟାଲ ନିଜ ପିତାଙ୍କ ପରି ବୁଦ୍ଧିମାନ ହୋଇଗଲା ଓ ମୁମ୍ବାଇ ଫେରିଗଲା । ରାମଦୟାଲର ବାପା (ରାମକିଷନ) ଙ୍କର ସେଠାକାର ବଡ଼ ବେପାରୀମାନଙ୍କ ସହ ଭଲ ସଂପର୍କ ଥିଲା । ସେମାନେ ତା'ର ସଚ୍ଚୋଟତା କଥା ଜାଣିଥିଲେ । ମୁମ୍ବାଇ ଯାଇ ରାମଦୟାଲ କଟନ୍ ଏକସ୍‌ଚେଞ୍ଜରେ ବାପାଙ୍କ ନାମରେ ଥିବା ପୁରୁଣା ଫାର୍ମକୁ ଆଉ ଥରେ ଚାଲୁ କରାଇଲା । ତାର ଭାଗ୍ୟବଳରେ କିଛି ବର୍ଷରେ ସେ କାମରେ ବେଶ୍ ଉନ୍ନତି କଲା ଓ ଲକ୍ଷାଧିକ ଟଙ୍କା ଅର୍ଜନ କରି ପାରିଲା ।

ରାମଦୟାଲ ତା' କକାଙ୍କୁ ଅନେକ ଥର ମୁମ୍ବାଇ ଆସିବା ପାଇଁ ଅନୁରୋଧ କରିଥିଲା । ପରନ୍ତୁ ଗାଁରେ ଏତେ କାମ ଛାଡ଼ି ସେ ଯିବାକୁ ସକ୍ଷମ ହୋଇ ପାରିଲା ନାହିଁ । ପରେ ଦ୍ୱାରକାଧାମ ଯାତ୍ରା କରିବାକୁ ଯିବାବେଳେ ସପରିବାର ମୁମ୍ବାଇରେ ରହିବାକୁ ସୁଯୋଗ ମିଳିଲା । ସେଠାରେ ପୁତୁରାର ଧନସଂପତ୍ତି ଓ ସମ୍ମାନ ଦେଖି ଖୁବ୍ ଖୁସି ହେଲା । ରାମଦୟାଲ ଓ ତା' ସ୍ତ୍ରୀ ସେମାନଙ୍କୁ ଗାଁ ଛାଡ଼ି ସବୁଦିନ ପାଇଁ ମୁମ୍ବାଇରେ ରହିଯିବା ପାଇଁ ଅନୁରୋଧ କଲେ । କିନ୍ତୁ ତା ମନ ଏ ବଡ଼ ସହରରେ ଲାଗିଲା ନାହିଁ । ସେ କିଛି ଦିନ

ପରେ ରାଜସ୍ଥାନରେ ତା ଗ୍ରାମକୁ ଫେରି ଆସିଲା । ଏବେ ସେ ଶିବଜୀଭାଇ ବଦଳରେ ଶେଠ୍ ଶିବଜୀରାମ ହିସାବରେ ପରିଚିତ ହେଲା । ଦାନଧର୍ମର ମାତ୍ରା ବଢ଼ି ଚ୍ୱଲିଲା । ପ୍ରୌଢ଼ ହୋଇ ଯାଇଥିବାରୁ ଆଗ ପରି ଆଉ ଧାଁ ଦଉଡ଼ କରିପାରିଲା ନାହିଁ । ଏତେ ଗୁଣ ଥିବା ସତ୍ତ୍ୱେ ତା'ର ଗୋଟିଏ ବଦ୍‌ଗୁଣ ଥିଲା ଯେ ସେ ଘରର ସମସ୍ୟା ପ୍ରତି କେବେ ଧ୍ୟାନ ଦେଉ ନଥିଲା । ଦୁଇଟି ଝିଅଙ୍କର ବାହାଘର ଭଲଘରେ ହୋଇଯାଇଥିଲା । ଏକମାତ୍ର ପୁତ୍ର ପଢ଼ାଶୁଣାରେ ଶୂନ୍ୟ ।

ଏପରି କିଛି ଲୋକ ଥିଲେ ଯେଉଁମାନେ ଶିବଜୀରାମଙ୍କ ଯଶ ଓ ମାନସମ୍ମାନକୁ ଈର୍ଷ୍ୟା କରିବାକୁ ଲାଗିଲେ । ସେମାନେ ରାମଦୟାଲ ପାଖରେ ଚୁଗୁଲି କରିବାକୁ ଲାଗିଲେ । ସେମାନେ ରାମଦୟାଲକୁ କହିଲେ, ତୁମେ ଏତେ ପରିଶ୍ରମ କରି ଟଙ୍କା ଅର୍ଜନ କରୁଛ, କିନ୍ତୁ ଗାଁରେ ସବୁ ପ୍ରଶଂସା ତୁମ କକାଙ୍କର ହେଉଛି । ତା' ସ୍ତ୍ରୀ ମଧ୍ୟ ଏପରି ପରିସ୍ଥିତିକୁ ସହ୍ୟ କରୁ ନଥିଲା, କିନ୍ତୁ ସ୍ୱାମୀଙ୍କ ଭୟରେ କିଛି କହୁ ନଥିଲା ।

ସ୍ତ୍ରୀ ବହୁତ ବୁଝାଇବା ପରେ ରାମଦୟାଲ ନିଜ ସ୍ତ୍ରୀ ଓ ପିଲାମାନଙ୍କ ସହ ଗ୍ରାମକୁ ଆସିଲା । ବାସ୍ତବରେ ଲୋକେ ଯାହା କହୁଥିଲେ ତାହା ପ୍ରତ୍ୟକ୍ଷ ଦେଖିବାକୁ ମିଳିଲା । ଚ୍ୱରିଆଡ଼େ ଶେଠ୍ ଶିବଜୀରାମଙ୍କ ପ୍ରଶଂସା ହେଉଥିଲା । ଶିବଜୀରାମ ଯେଉଁଆଡ଼େ ଯାଉଥିଲେ ଲୋକମାନେ ଠିଆ ହୋଇ ନମସ୍କାର କରୁଥିଲେ । ସକାଳ ସଂଧ୍ୟାରେ ଅତିଥି ଅଭ୍ୟାଗତଙ୍କ ନିମନ୍ତେ ଅନ୍ନ ବ୍ୟବସ୍ଥା ଥିଲା । ଏସବୁ ଦେଖି ରାମଦୟାଲ କକାଙ୍କ ଠାରୁ ଭିନ୍ନେ ହେବାକୁ ଚ୍ୱହିଁଲା । ଶିବଜୀରାମ ଏହା ଶୁଣି ଦୁଃଖିତ ହେଲା; କିନ୍ତୁ ଭାବିଚିନ୍ତି କହିଲା, ଏସବୁ ସଂପତ୍ତି ତ ତୁମ ବାପା ଅର୍ଜନ କରିଛନ୍ତି, ମୁଁ ତ କେବଳ ବର୍ଷ ବର୍ଷ ଧରି ଏହାକୁ ଖର୍ଚ୍ଚ କରି ଚ୍ୱଲିଛି । ତୁମର ଯାହା ଇଚ୍ଛା କର– ମୋର ଏଥିରେ କିଛି କହିବାର ନାହିଁ ।

ଗୋଟିଏ କାଗଜରେ ସଂପତ୍ତିର ତାଲିକା ଲେଖାଗଲା । ଗାଁର ବଡ଼ ଘର ଓ ମୁମ୍ବାଇର ବ୍ୟବସାୟ ରାମଦୟାଲ ନିଜ ଭାଗରେ ରଖିବାକୁ ଚ୍ୱହିଁଲା । ନଗଦ ଟଙ୍କାକୁ ଦୁଇ ସମାନ ଭାଗ କରାଗଲା । ନିଜ ଘର ଛାଡ଼ି ଯିବାରେ ବହୁତ ଦୁଃଖ ହୁଏ, କିନ୍ତୁ ଶିବଜୀରାମଙ୍କ ଚେହେରାରେ ଲେଶମାତ୍ର

ଦୁଃଖର ଚିହ୍ନ ନଥିଲା । ସେ ରାମଦୟାଲକୁ କହିଲା, "ତୁମର ମାନ ସମ୍ମାନ ଦୃଷ୍ଟିରୁ ତୁମେ ବଡ଼ କୋଠାରେ ରହିବା ସୁନ୍ଦର ହେବ । ମୁଁ କାଲି ଛୋଟ କୋଠାକୁ ଚ୍ଲିଯିବି । ବାକି ରହିଲା ନଗଦ ଟଙ୍କା କଥା । ଦେବଦତ୍ତର ସ୍ୱଭାବ କେମିତି ତ ଜାଣିଛ । ସେ ବଦଖର୍ଚ୍ଚ କରିବ । ଏତେ ସବୁ ଟଙ୍କାକୁ ମୁଁ କେମିତି ସମ୍ଭାଳିବି? ତୁମେ ସବୁ ଜାଣିଥିବାରୁ ଏ ଟଙ୍କା ସବୁ ପାଖରେ ରଖ । ମୋର ଯେତେବେଳେ ଯାହା ଦରକାର ହେବ, ତୁମଠାରୁ ମଗାଇ ପଠାଇବି ।" ଶେଷ ବାକ୍ୟ କହିବା ସମୟରେ ତା' ଆଖିରେ ଲୁହ ଆସିଯାଇଥିଲା ।

ରାମଦୟାଲ ଭାବିଲା, କକା କୌଣସି ହିସାବ ଦେଖିଲେ ନାହିଁ, ବଡ଼ କୋଠା ଛାଡ଼ିବା ପାଇଁ ଆପତ୍ତି କଲେ ନାହିଁ, ମୁମ୍ବାଇର ବ୍ୟବସାୟର ନାଁ (ଗୁଡ୍‌ୱିଲ) ବଦଳରେ କିଛି ମାଗିଲେ ନାହିଁ, ବରଂ ସବୁ ଟଙ୍କା ମୋ ପାଖରେ ଛାଡ଼ିଦେଲେ । ତାକୁ ନିଜ ଉପରେ ଗ୍ଲାନି ଓ ଲଜ୍ଜ୍ୟା ଆସିଲା । ସେ କାନ୍ଦି



କାନ୍ଦି କକାଙ୍କ ଗୋଡ଼ତଳେ ପଡ଼ି କ୍ଷମା ମାଗିଲା । କହିଲା, ଲୋକଙ୍କ କୁହାକୁହିରେ ମୁଁ ଏପରି ଅବୁଝା ପଣିଆ କଲି । ମୋର କୌଣସି ପ୍ରକାର ଭାଗବଣ୍ଟା କରିବାର ନାହିଁ । ବଡ଼ ଭାଗ୍ୟରୁ ମୁଁ ଆପଣଙ୍କ ପରି କକା ପାଇଛି । ମୋ ବାପା ପିଲାବେଳେ ଆମକୁ ଛାଡ଼ି ଚ୍ଲିଯାଇଥିଲେ, ଆପଣ ଯଦି ମୋତେ

ପଢ଼ାପଢ଼ି କରାଇ ଯୋଗ୍ୟ କରି ନଥାନ୍ତେ, ତେବେ ଆମ ସମସ୍ତଙ୍କର ଆଜି କଣ ହୋଇଥାନ୍ତା!

କିଛିଦିନ ପରେ ମୁମ୍ବାଇ ଯିବା ସମୟରେ ସେ କକାପୁଅ ଭାଇ ଦେବଦତ୍ତକୁ ସାଙ୍ଗରେ ନେଇଗଲା। ସେଠାକୁ ଯାଇ ସେ ନିଜର ପୁରୁଣା ବଦଅଭ୍ୟାସ ଭୁଲି, କାମରେ ମନ ଦେଲା।

ମୁଁ ଯେତେବେଳେ ଶିବଜୀରାମଙ୍କୁ ଦେଖିଥିଲି, ସେ ସେତେବେଳେ ଅଶୀ ବର୍ଷର ବୃଦ୍ଧ। ସଂଯମ ଓ ତ୍ୟାଗପୂତ ଜୀବନ ଯୋଗୁଁ ସେ ଏ ବୟସରେ ମଧ୍ୟ ସୁସ୍ଥ ଥିଲେ। ଅନ୍ନଛତ୍ର ଓ ବ୍ରାହ୍ମଣ ଭୋଜନ ସହିତ ତାଙ୍କଦ୍ୱାରା ସ୍ଥାପିତ ସ୍କୁଲ ଓ ହସ୍ପିଟାଲ ଜନତାଙ୍କ ସେବାରେ ନିୟୋଜିତ ଥିଲା।



# ଭାଗ୍ୟର ଖେଳ

ରାତି ୯ଟା । ଖାଇ ସାରି କିଛି ପଢ଼ାପଢ଼ି କରୁଥିଲି । ମୋ ଘର ବଗିଚ୍ଚର ଫାଟକ ପାଖରେ କିଛି ଗଣ୍ଡଗୋଳ ଶୁଣାଗଲା । କିଛି ସମୟ ସେଆଡ଼େ ଧ୍ୟାନ ଦେଇ ନଥିଲି । କିନ୍ତୁ ଯେତେବେଳେ ଗୋଳମାଳ ଭିତରୁ କାନ୍ଦବୋବାଳି ଶୁଭିଲା–ବାଧ୍ୟ ହୋଇ ଉପର ମହଲାରୁ ତଳକୁ ଆସିଲି । ଦେଖିଲି ୨୦/୩୦ ଜଣ ବ୍ୟକ୍ତି ଗୋଟିଏ ଦୁର୍ବଳିଆ ପିଲାକୁ ଘେରି ରହିଛନ୍ତି । ସେ ପିଲାର ନାକ ଓ ପାଟିରୁ ରକ୍ତ ବାହାରୁଛି । ଲୋକେ ମଝିରେ ମଝିରେ ତାକୁ ମାଡ଼ ମାରୁଛନ୍ତି ।

ପଚ୍ଚରିବାରୁ ଜଣାଗଲା, ସିନେମା ହଲ ପାଖ ମୁଢ଼ିଚଣା ଦୋକାନରୁ ସେ ମୁଢ଼ି ଚ୍ଚୋରିକରି ନେଉଥିଲା । ଧରା ପଡ଼ିଗଲା । ସାଇର ବଦମାସ୍ ପିଲାଙ୍କୁ ନିଜ ବଳ ଦେଖାଇବାର ସୁଯୋଗ ମିଳିଗଲା ଏବଂ ମାରି ମାରି ପିଲାଟାର ଏ ଅବସ୍ଥା କରିଛନ୍ତି ।

ପିଲାଟିର ଚେହେରାରେ କରୁଣା ଓ ଯାଚନାର ଝଲକ ଦେଖିଲି । ଦୟା ଆସିଲା । ମୁଢ଼ି ଦୋକାନୀକୁ ୨ ଟଙ୍କା ଦେଇ ଓ ଲୋକଙ୍କୁ ବୁଝାସୁଝା କରି ବିଦା କଲି ।

ଦରୁଆନକୁ ବାଳକଟିକୁ ଭତରକୁ ଆଣିବାକୁ କହିଲି । ପିଲାଟି ସେପର୍ଯ୍ୟନ୍ତ ଭୟରେ ଥରୁଥିଲା । ଭିତରକୁ ଆସିବାକୁ ଡରୁଥିଲା, କାଳେ ଆଉ ମାଡ଼ ବସିବ ବା ଅନ୍ୟ କିଛି ଅସୁବିଧା ହେବ । ତାକୁ ପ୍ରାୟ ଠେଲା ଠେଲି କରି ଘର ଭିତରକୁ ଅଣାଗଲା । ମୁଁ ତା ମୁଣ୍ଡରେ ସ୍ନେହରେ ହାତ ବୁଲାଇ ପଚ୍ଚରିଲି, ଏମିତି ଖରାପ କାମ କାହିଁକି କଲୁ? ସେ କଇଁ କଇଁ ହୋଇ କାନ୍ଦି ଉଠିଲା । କିଛି ସମୟ ପର୍ଯ୍ୟନ୍ତ କିଛି କହି ପାରିଲା ନାହିଁ । ମାଡ଼ ଓ ଭୋକରେ ସେ ହାଲିଆ ହୋଇ ଯାଇଥିଲା । ସେ ବେହୋସ ହେବା ପରି ଲାଗୁଥିଲା । ତାକୁ ଖାଇବାକୁ ଦେଲି ଏବଂ ଗିଲାସେ ଗରମ କ୍ଷୀର ଦେଲି । ତା'ପରେ ସେ ସାଷ୍ଟମ ହେଲା ।

ମୁଁ ତାକୁ କାଲି ସକାଳ ଯାଏଁ ମୋ ଘରେ ରହିବାକୁ କହିଲି । ସେ କାନ୍ଦି କାନ୍ଦି କହିଲା, "ମୋ ମା ଘରେ ଏକା ଓ ଗତକାଲିଠାରୁ କିଛି ଖାଇ

ନାହିଁ। ସେ ମୋ ବାଟ ଦେଖୁଥିବ। ଏତେ ରାତି ଯାଏ ମୁଁ ଫେରି ନଥିବାରୁ ସେ ଚିନ୍ତିତ ଥିବ। ତେଣୁ ମତେ ଘରକୁ ଯିବାକୁ ଦିଅନ୍ତୁ।'' କିଛି ଖାଦ୍ୟ ତାକୁ ଦେଇ ପୁନର୍ବାର କାଲି ଆସିବାକୁ କହି ତାକୁ ପଠାଇ ଦେଲି।

ଦୁଇତିନି ଦିନ ଗଲା। ପିଲାଟିର ସରଳ ମୁହଁ ଭୁଲି ପାରୁ ନଥାଏ। ଦ୍ୱାରରକ୍ଷକକୁ ପଠାଇ ତାକୁ ଡକାଇଲି। ଦେଖିଲି ପିଲାଟିର ମୁଣ୍ଡ ଓ ହାତରେ ପଟି ବନ୍ଧା ହୋଇଛି। ତା' ସଂଗରେ ଜଣେ ଯୁବତୀ, କିନ୍ତୁ ସେ କୃଶକାୟ ଓ ରୋଗିଣୀ। ତା' ଶାଢ଼ୀରେ ଜାଗା ଜାଗାରେ ତାଳି ପଡ଼ିଥାଏ। ତା ଚେହେରାରେ ଦୈନ୍ୟ ଓ ବେମାରୀର ଚିହ୍ନ ସ୍ପଷ୍ଟ। ତା' ଗଠନରୁ ଜଣାପଡୁଥାଏ ଯେ ସେ ଅତୀତରେ ଖୁବ୍ ସୁନ୍ଦରୀ ଥିଲା।



ସେ କହିଲା, ସେଦିନ ମାଡ଼ ଖାଇ ପିଲାଟାକୁ ଜ୍ୱର ହୋଇଗଲା। କେତେ ଜାଗାରେ ଫୁଲି ଯାଇଥିଲା। ସ୍ତ୍ରୀଲୋକଟିର କଥାରୁ ଜଣାପଡୁଥିଲା ସେ ପୂର୍ବବଙ୍ଗରୁ ଆସିଛି। ଯେଉଁ ଆତ୍ମକଥା ସେ କହିଲା, ଏପର୍ଯ୍ୟନ୍ତ ମୁଁ ଭୁଲି ନାହିଁ। ଯେବେ କୌଣସି ଦୁର୍ବଳ ପିଲା ଭିକ ମାଗିବାର ଦେଖେ, ସେଇ ଅବୋଧ ବାଳକର ଛବି ମୋ ଆଖି ଆଗରେ ଭାସି ଉଠେ।

ଖୁଲଣା ଜିଲ୍ଲାର କେଉଁ ଏକ ଗାଁରେ ସେମାନଙ୍କର ଭଲ ଜମିବାଡ଼ି

ଥିଲା। ଛୋଟ ପୋଖରୀଟିଏ ମଧ୍ୟ ଥିଲା। ସବୁ ପ୍ରକାର ସୁଖୀ ଗୃହସ୍ଥୀଟିଏ ଥିଲା। ଦେଶ ବିଭାଜନ ପରେ ସେମାନେ ସେଠାରେ ଯଦିଓ ରହିଗଲେ, ହେଲେ ସେଠାରେ ନାନା ପ୍ରକାର କଷ୍ଟ ଓ ଅପମାନ ସହିବାକୁ ପଡୁଥିଲା। ସେମାନଙ୍କର ଅନ୍ୟ କେଉଁଠାରେ ଆଶ୍ରା ନଥିଲା। ପୂର୍ବପୁରୁଷର ଘର ଓ ଜମି ପ୍ରତି ମୋହ ତାଙ୍କୁ ଗାଁ ଛାଡ଼ି ଚ୍ଳିଯିବାରୁ ଅଟକାଇଥିଲା।

୧୯୫୮ରେ ଦିନେ ହଠାତ୍ ହିନ୍ଦୁମାନଙ୍କ ପ୍ରତି ଆକ୍ରମଣ ହେଲା। ଯିଏ ମୁସଲମାନ ହୋଇଗଲେ ତାଙ୍କର ଧନ ଜୀବନ ରକ୍ଷା ହୋଇଗଲା। ଯେଉଁମାନେ ବିରୋଧ କଲେ ତାଙ୍କୁ ହତ୍ୟା କରାଗଲା।

ତା ସ୍ୱାମୀ ଥିଲେ ବୈଷ୍ଣବ, କଣ୍ଠିଧାରୀ କରଣ। ଅତୀତରେ ଗାଁର ମୁଖିଆ ମଧ୍ୟ ଥିଲେ। ଦୁଇଓଳା ଘରେ ତାଙ୍କର ଠାକୁରଙ୍କୁ ପୂଜା ଅର୍ଚ୍ଚନା ହେଉଥିଲା।

ସେ ଧର୍ମତ୍ୟାଗ କରିବାକୁ ଆଦୌ ପ୍ରସ୍ତୁତ ନଥିଲେ। ବିଧର୍ମୀମାନେ ତାଙ୍କୁ ହାଣି ଶବକୁ ପାଖ ପୋଖରୀରେ ଫିଙ୍ଗିଦେଲେ। ପଡ଼ୋଶୀମାନଙ୍କ ସହାୟତାରେ ବିଧବା ମା ତା'ର ୮ ବର୍ଷର ପୁଅକୁ ଧରି ସୀମା ପାର କରି ଭାରତର ବନଗାଁରେ ରହିବାକୁ ଲାଗିଲା। ଯାହା କିଛି ସମ୍ବଳ ପାଖରେ ଥିଲା, ତାହା ବାଟରେ ଲୁଟ୍ ହୋଇଯାଇଥିଲା।

ସେ ଦେଖିଲା, ସେଠାରେ ପାକିସ୍ଥାନରୁ ଆସିଥିବା ଶରଣାର୍ଥୀ ବହୁତ ସଂଖ୍ୟାରେ ଥିଲେ। ସରକାରୀ କ୍ୟାମ୍ପରେ ଯେନତେନ ପ୍ରକାରେ ଜୀବନ ବିତାଉଥିଲେ। ଭଗବାନଙ୍କ ଦୟାରୁ ସେମାନଙ୍କ ମଧ୍ୟରୁ ଅନେକ ବିଭିନ୍ନ ପ୍ରକାର ରୋଗଗ୍ରସ୍ତ ହୋଇ ଦୈନିକ ଯାତନାରୁ ମୁକ୍ତି ପାଇ ଯାଉଥିଲେ।

୨୬/୨୭ ବର୍ଷ ବୟସ। ସୁଗଠିତ ଅଂଗପ୍ରତ୍ୟଙ୍ଗ। ଚହେରାରେ ଲାବଣ୍ୟ। ବିପଦ ବେଳେ ସୁନ୍ଦରତା ଅଭିଶାପ ହୋଇଯାଏ। କ୍ୟାମ୍ପରେ ନାମ ପଂଜୀକରଣ କରୁଥିବା ଦାରୋଗା ବାବୁ ରାତିରେ ଆସି ତା' ବସାରେ ଶୋଇପଡ଼ିଲା। ଶରଣାର୍ଥୀଙ୍କୁ ପୁନର୍ବାସ ଓ ତାଙ୍କର ଦେଖାରଖା କରୁଥିବା ଲୋକମାନେ ଏତେ ନିର୍ଲଜ୍ଜ ଓ ନିଶ୍ଚିନ୍ତ ହୋଇ ଯାଇଥିଲେ ଯେ ତାଙ୍କୁ ନିନ୍ଦାର ଡର ନଥିଲା। ଯେକୌଣସି ଶରଣାର୍ଥୀ ବାଳିକା ବା ସ୍ତ୍ରୀ ସହିତ ମନଇଚ୍ଛା ବ୍ୟବହାର କରୁଥିଲେ। ସେପରି କାର୍ଯ୍ୟକଳାପ ତାଙ୍କର ଅବାଧ ଅଧିକାର ବୋଲି ଗଣା ଯାଉଥିଲା। ଶରଣାର୍ଥୀ ସ୍ତ୍ରୀଲୋକମାନେ ବିପଦରେ

ପଡ଼ିଥିଲେ, ଭୋକିଲା ଥିଲେ ଓ ଥକି ଯାଇଥିଲେ । ଏଭଳି ସ୍ଥିତିରେ ସେମାନଙ୍କୁ କେତେ ବା ବିରୋଧ କରି ପାରିଥାନ୍ତେ । କ୍ୟାମ୍ପରେ ରହିବା ଜାଗା ଓ ଖାଦ୍ୟ ତଥା ସରକାରୀ ସହାୟତା ନ ମିଳିଲେ ତିଳତିଳ କରି ମୃତ୍ୟୁ । ଜୀବନ ଧରି ରହିବା ପାଇଁ ଏହି ଅପମାନକୁ ଆବଶ୍ୟକତା ଭାବରେ ଗ୍ରହଣ କରିଥିଲେ ।

କିନ୍ତୁ ସୁରମା ସେହି ଧାତୁର ନ ଥିଲା । ସେ ନିଜ ଶରୀରକୁ ଦେଇ ନଥିଲା ଓ ଜୋର୍ ଜୋର୍ ଚିତ୍କାର କରିବାକୁ ଲାଗିଲା । ସେଇ ଦାରୋଗା ସେଦିନ ଚୁପ୍‌ଚାପ ଚାଲିଗଲା । କିନ୍ତୁ ତା' ପର ଦିନ ଦରଖାସ୍ତ ନେଇ ତା'ରି ପାଖକୁ ଯିବାକୁ ଥିଲା । ସୁରମା ତା' ପାଖକୁ ଯିବାକୁ ଉଚିତ ମଣିଲା ନାହିଁ । ରେଜେଷ୍ଟ୍ରୀ ଅଫିସ ନଯାଇ ନିଜ ପିଲାକୁ ନେଇ, ରାସ୍ତାରେ ଅନେକ ଦୁଃଖ କଷ୍ଟ ସହି କଲିକତାରେ ପହଞ୍ଚିଲା । ସେଠାରେ ତାକୁ ଗୋଟିଏ ପରିବାରରେ ଚାକରାଣୀ କାମ ମିଳିଗଲା ଓ ରହିବାକୁ ଗୋଟିଏ ଛୋଟ ବଖରା ।

ରୂପବତୀ ବିଧବା ଯୁବତୀ ସାହିର ଯୁବକମାନଙ୍କ ପାଇଁ ଆକର୍ଷଣର କେନ୍ଦ୍ର ହୋଇଗଲା । ତା' ଘର ଆଖପାଖରେ ବିନା କାମରେ ସେମାନେ ବୁଲାବୁଲି କଲେ । କେତେବେଳେ ସିଟି ମାରିଲେ ତ ଅନ୍ୟ କେତେବେଳେ ଅଭଦ୍ର ଶବ୍ଦ । ବ୍ୟସ୍ତ ହୋଇ ସେ ଜାଗା ଛାଡ଼ିଦେଲା । ଭାବିଥିଲା ଭାରତରେ ସହଧର୍ମୀ ବଂଧୁମାନଙ୍କ ମେଳରେ ଜୀବନ କାଟିଦେବ, ଛୁଆଟିକୁ ଯେନତେନ ପ୍ରକାରେଣ ମଣିଷ କରିଦେବ; କିନ୍ତୁ ତାକୁ କଣ ଜଣାଥିଲା ଯେ ପାକିସ୍ଥାନ ପରି ଏଠାରେ ମଧ୍ୟ ଭୋକିଲା ଶୃଗାଳମାନଙ୍କର ଅଭାବ ନାହିଁ । ଅନେକ ସମୟରେ ମନରେ ଆସୁଥିଲା ଯେ ମୁହଁକୁ ଏସିଡ୍ ଢାଳି ବିକୃତ କରି ଦିଅନ୍ତା; କିନ୍ତୁ ଯନ୍ତ୍ରଣା ଭୟରେ ଓ ଛୁଆଟି କଥା ଭାବି ଏ କାର୍ଯ୍ୟ କରି ପାରିଲା ନାହିଁ ।

ବହୁତ ଜାଗା ବୁଲି ପରିଶେଷରେ ଢାକୁରିଆ ଲେକ୍ ପାଖରେ ଗୋଟିଏ ଶରଣାର୍ଥୀ ପରିବାର ସଂଗରେ ରହିବାର ସାହାଯ୍ୟ ମିଳିଗଲା । ରହିବାର ସୁବିଧା ସିନା ହେଲା–ପେଟ ପୋଷିବ କିପରି? ଭିକ୍ଷାବୃତ୍ତି କରିବାରେ ପ୍ରଥମେ ପ୍ରଥମେ ଅସୁବିଧା ଲାଗୁଥିଲା । କ୍ରମଶଃ ଅଭ୍ୟାସରେ ପଡ଼ିଗଲା । ଯେକୌଣସି ମତେ ଦି'ବେଳାର ଖାଇବା ଚଳିଗଲା ।

ପୁଅଟି ଦେଖିବାକୁ ସୁନ୍ଦର ଓ କଥାବାର୍ତ୍ତାରେ ଚତୁର ଥିଲା । ସକାଳ ସନ୍ଧ୍ୟାରେ ଯେଉଁମାନେ ଲେକ୍ ପାଖକୁ ଆସୁଥିଲେ, ସେ ସେମାନଙ୍କର

କାର୍‌କୁ ସଫା କରିଦିଏ। କାର୍‌ର ଜଗାରଖା କରେ। କେତେକ ତାକୁ ଦୁଇଚାରି ଅଣା ବକ୍‌ସିସ୍ ଦେଉଥିଲେ ତ ଆଉ କେତେକ ତାକୁ ଧମକେଇ ବିଦା କରିଦେଉଥିଲେ।

ଦିନେ ତା' ମା'କୁ ଜ୍ୱର ହେଲା। ଓଦା ଚଟାଣରେ ଶୋଇ ଓ ଭୋକ ଉପାସରେ ରହି ଏପରି ହେବାଟା ସାଧାରଣ କଥା। ଡାକ୍ତରଙ୍କୁ ଦେଖାଇବାର ପ୍ରଶ୍ନ ନଥିଲା। ପଡ଼ୋଶୀ ବୃଦ୍ଧା ୨ଟି କୁଇନାଇନ୍ ବଟିକା ଦେଇଥିଲେ। ବଟିକା ସାଂଗରେ ଲିଆ ଖାଇବାକୁ କହିଥିଲେ। ପିଲାଟି ଲିଆ ଆଣିବାକୁ ଆସି ଦୋକାନ ପାଖରେ ସାରାଦିନ ଠିଆ ହେଲା। ଦିନସାରା କିଛି ମିଳିଲା ନାହିଁ। ମା'ର ଭୋକ ବିଷୟରେ ଭାବି ପାଖ ଦୋକାନରୁ କିଛି ଲିଆ ଚୋରାଇ ଆଣିଲା, କିନ୍ତୁ ଧରା ପଡ଼ିଗଲା। ଏଇ କାହାଣୀ ମୁଁ ସେଦିନ ତା' ମା' ମୁହଁରୁ ଶୁଣିଥିଲି।

ପିଲାଟିର ପଢ଼ାପଢ଼ି ଶୂନ୍। ତାକୁ ମୋ ଅଫିସ୍‌ରେ ଚପରାଶି କାମ ଦେଲି। ଏକଥା କେତେ ବର୍ଷର ହେଲାଣି। ସୁରେନ୍ ଏବେ ବଡ଼ ହୋଇ ଗଲାଣି। କିଛି ଇଂଲିସ୍ ଓ ହିନ୍ଦୀ ପଢ଼ିପାରିଲାଣି। ମୋ ଅଫିସ୍‌ରେ ଯେତେ କର୍ମଚାରୀ ଅଛନ୍ତି–ସେ ସମସ୍ତଙ୍କ ଠାରୁ ପରିଶ୍ରମୀ ଓ ବିଶ୍ୱସ୍ତ। ଗରିବ ବଙ୍ଗାଳୀ ପରିବାରରେ ଝିଅର ଅଭାବ ନାହିଁ। ଆଶା କରୁଛି, ଆଉ କିଛି ବର୍ଷ ପରେ ତା'ର ବିବାହ ହେବ–ସେତେବେଳେ ତା' ଦୁଃଖିନୀ ମା'କୁ ବହୁତ ବର୍ଷ ପରେ ଗୃହସ୍ଥୀର କିଛି ସୁଖ ଦେଖିବାକୁ ମିଳିବ।

ଆଜି ମଧ୍ୟ ମୁଁ ଭାବେ–ସୁରେନ୍ କଣ ପ୍ରକୃତରେ ଚୋରି କରିଥିଲା? କାହିଁ ପରେ ତ ତା' ବିଷୟରେ ଏମିତି କିଛି ଅଭିଯୋଗ ଆସି ନାହିଁ! ମଣିଷ ସ୍ୱଭାବବଶତଃ ଚୋରି କରେ, ନା ପରିସ୍ଥିତି ତାକୁ ବାଧ୍ୟ କରାଏ?



# ହରିଆ ମା'

ଘଟଣାଟି ୫୦/୫୫ ବର୍ଷ ପୂର୍ବର । ସେହି ସମୟରେ ରାଜସ୍ଥାନର ପ୍ରତ୍ୟେକ ଗାଁରେ ବର ବା ଅଶ୍ୱତ୍ଥ ଗଛ ଉପରେ ନହେଲେ ପୁରୁଣା କୂଅ ଭିତରେ ଭୂତପ୍ରେତ ରହୁଥିବାର ବିଶ୍ୱାସ କରାଯାଉଥିଲା । ଗାଁରେ ବହୁତ ଏମିତି ଲୋକ ମିଳିବେ ଯେ କି ହଲପ କରି କହିବେ କି ନିଜ ଆଖିରେ ସେ ଅମୁକ ଜାଗାରେ ଧଳା ଲୁଗା ପିନ୍ଧିଥିବା ଭୂତକୁ ଦେଖିଛନ୍ତି । ଭୂତର ବଡ଼ ବଡ଼ ଗୋଡ଼ ଓ ଉଚ୍ଚତା ଗଛ ସଂଗରେ ସମାନ ।

ଭୂତ ଭୂତଣୀ ବ୍ୟତିରେକେ ପ୍ରତ୍ୟେକ ଗାଁରେ ଗୋଟିଏ ଦୁଇଟି ଡାହାଣୀ ମଧ୍ୟ ଥିଲେ । ମୋର ଆମ ଗାଁର ଗୋଟିଏ ଘଟଣା ଏପର୍ଯ୍ୟନ୍ତ ମନେ ଅଛି । ହରିଆ ମା' ସେଇ ଡାହାଣୀ ରୂପରେ ପ୍ରସିଦ୍ଧ ଥିଲା । ସେ ସେତେବେଳକୁ ପ୍ରୌଢ଼ା ହୋଇ ସାରିଲାଣି । ସ୍ୱାସ୍ଥ୍ୟ ସାଧାରଣତଃ ଠିକ୍ ଥିଲା । କିନ୍ତୁ ଲୋକମାନେ ତାକୁ ଡରୁଥିଲେ, ସେଥିପାଇଁ କାହାଘରେ ତାକୁ କାମ ମିଳୁ ନଥିଲା । ରୋଜଗାରିଆ କେହି ନଥିଲେ, ଭିକ ମାଗି କୌଣସି ମତେ ଚଳି ଯାଉଥିଲା । ଯେତେବେଳେ ସେ କୌଣସି ସାହି ବା ପଡ଼ା ଭିତରକୁ ଯାଉଥିଲା, ତା ଯିବା ପୂର୍ବରୁ ସମସ୍ତଙ୍କୁ ତା ଆସିବା ଖବର ମିଳିଯାଉଥିଲା । ସ୍ତ୍ରୀଲୋକମାନେ ନିଜ ଛୁଆମାନଙ୍କୁ ଲୁଚେଇ ଦେଉଥିଲେ । ଘର ଦୁଆର ମୁହଁରୁ ଅତିଶୀଘ୍ର ଚ୍ଚାଉଳ ମୁଠିଏ ବା ରୁଟି ଖଣ୍ଡେ ଦେଇ ବିଦା କରି ଦେଉଥିଲେ । ଆମେ ସବୁ ଟିକେ ବଡ଼ ପିଲା ଡରିଡରି ତାକୁ ତା' ଯିବା ଆସିବା ବାଟରୁ ପଛରୁ ଦେଖୁଥିଲୁ ।

ସେତେବେଳେ ଗାଁରେ ଡାକ୍ତର ବୈଦ୍ୟ ନଥାନ୍ତି, ଛୁଆମାନଙ୍କୁ ଝାଡ଼ା ବା ଅନ୍ୟ କିଛି ବେମାରୀ ହେଲେ ହରିଆ ମା' ଉପରେ ସମସ୍ତଙ୍କ ସନ୍ଦେହ ହୁଏ । ଦୁଇ ତିନି ଜଣ ମୁଖିଆ ଲୋକ ଯାଇ ତା'ଠାରୁ ତା' ଛେପ ଆଣନ୍ତି ଓ ପିଲାଙ୍କ ଉପରେ ଛିଞ୍ଚି ଦିଅନ୍ତି । ସେଇ ବେମାର ପିଲା ଏମିତିରେ ତ ଆପେ ଆପେ ବହୁତ ଜଣ ଭଲ ହୋଇଯାଆନ୍ତି, ଆଉ କେତେକ ମରି ଯାଆନ୍ତି । ଯେଉଁମାନେ ମରି ଯାଆନ୍ତି, ସେମାନଙ୍କୁ ହରିଆ ମାଆର ଦୃଷ୍ଟି ଲାଗିଥାଏ ବୋଲି କୁହାଯାଏ । ହରିଆ ମା' ଏପରି ଅପମାନିତ ଜୀବନ ସଂଗରେ ବୁଝାମଣା କରିସାରିଥିଲା । କିଛି ବର୍ଷ ପରେ ମୁଁ ଗାଁକୁ ଯାଇଥିଲି । ଅନ୍ୟାନ୍ୟ ଆଲୋଚନା ସଂଗେ ହରିଆ ମା'ର କଥା ପଡ଼ିଲା । ଜାଣିଲି ଯେ

ବହୁତ ଦିନ ହେଲା ସେ ରୋଗରେ ପଡ଼ିଛି । ସେଥିପାଇଁ ଭିକ ମାଗିବାକୁ ଯାଇ ପାରୁନାହିଁ । ତା ପାଖକୁ ଯିବାର ଇଚ୍ଛା ବହୁତ ଦିନରୁ ଥିଲା । ତା' ପାଖକୁ ଯିବାରେ ମୋର ଭୟ ନଥିଲା । ତେଣୁ ଲୋକଙ୍କ ମନା ସତ୍ତ୍ୱେ ଜଣେ ବନ୍ଧୁଙ୍କୁ ସଂଗରେ ଧରି ତା' ଘରକୁ ଗଲି ।

ସେ ଗାଁ ବାହାରେ ଖଣ୍ଡିଏ ଚାଳିଆ ଘରେ ରହୁଥିଲା । ସେଠାକୁ ଯାଇ ଦେଖିଲି ଯେ ଖଣ୍ଡେ ଦଦରା ଖଟ ଉପରେ ସେ ଶୋଇଛି । ଦି' ଚାରି ଖଣ୍ଡ ମାଟିର ଓ ଆଲୁମିନିୟମ୍‌ର ପାତ୍ର ଇଆଡ଼େ ସିଆଡ଼େ ବିଛାଡ଼ି ହୋଇ ପଡ଼ିଛି । ବହୁତ ଦିନରୁ ସଫା ହୋଇ ନଥିବାରୁ ଅଳିଆ-ଆବର୍ଜନା ମଧ୍ୟ ପଡ଼ିଛି । ଦୁଇ ତିନି ଥର ଡାକିବା ପରେ ସେ ଉଠି ବସିଲା ଓ ଆଶ୍ଚର୍ଯ୍ୟରେ ଆମ ଆଡ଼କୁ ଚାହିଁଲା । ତା'ର ବିଶ୍ୱାସ ହେଉ ନ ଥିଲା କି ତା' କଥା ବୁଝିବାକୁ କିଏ ଆସି ପାରେ । ଦୁଃଖୀ ମଣିଷକୁ ଯେତେବେଳେ ସାନ୍ତ୍ୱନା ମିଳେ ସେ ଦ୍ରବୀଭୂତ ହୋଇଯାଏ । ଆମକୁ ଦେଖି ସେ କାନ୍ଦିବାକୁ ଲାଗିଲା । କିଛି



କହିବାକୁ ଚାହୁଁଥିଲା, କିନ୍ତୁ କୋହ ଉଠୁଥାଏ । କହିପାରିଲା ନାହିଁ । ଫ୍ଲାସ୍କରେ ଚା ନେଇଥିଲୁ । ଗୋଟିଏ ବଡ଼ ଗିନାରେ ପିଇବାକୁ ଦେଲୁ, ସବୁ ପିଇ ଦେଲା । ବୋଧ ହୁଏ ବହୁତ ଭୋକଶୋଷରେ ଥିଲା ।

ମୁଁ ମୋ ସାଂଗକୁ ଗାଁ ଭିତରୁ ଗୋଟିଏ ମୂଲିଆ ଡାକି ଆଣିବାକୁ

ପଠାଇଲି, କିନ୍ତୁ କେହି ସେଠାକୁ ଆସିବାକୁ ରାଜି ହେଲେ ନାହିଁ । କଲିକତାରୁ ମୋ ସାଂଗରେ ଗୋଟିଏ ଚାକର ଆସିଥିଲା । ତାକୁ ନେଇ ସଂଧ୍ୟାବେଳେ ମୁଁ ପୁଣି ସେଠାକୁ ଗଲି । ଗରମ ଦୁଧ, ଦଲିଆ ତଥା ସାଧାରଣ ସ୍ୱାସ୍ଥ୍ୟବର୍ଦ୍ଧକ ଔଷଧ କିଛି ନେଇଥିଲି । ପଥ୍ୟ ଓ ଔଷଧରୁ ତାକୁ ଯେତେ ବଳ ନ ମିଳିଲା, ତା'ଠାରୁ ବେଶୀ ସେ ଆମଠାରୁ ସହାନୁଭୂତି ପାଇ ଖୁସି ଥିଲା ।

ତା' ପରଦିନ ଜଣେ ବୈଦ୍ୟଙ୍କୁ ବୁଝାବୁଝି କରି ନେଇଗଲି ଓ ତା'ର ଚିକିତ୍ସା କରାଗଲା । ଉଚିତ ପଥ୍ୟ ଓ ଔଷଧ ଫଳରେ ଅଳ୍ପ ଦିନ ଭିତରେ ସେ ସୁସ୍ଥ ହୋଇଗଲା । ତା'ପରେ ମୁଁ ତା' ପାଖକୁ କେତେ ଥର ଗଲି, ଯାହାଫଳରେ ଆତ୍ମୀୟତା ହୋଇଗଲା । ମନରେ ଗୋଟିଏ ଦୁଃଖ ରହିଥିଲା କି ଅନ୍ଧବିଶ୍ୱାସରେ ଏଇ ଅସହାୟ ମହିଳା ପ୍ରତି ସମାଜ ଓ ଗାଁର ଲୋକ ବହୁତ ଅନ୍ୟାୟ କରିଛନ୍ତି ।

ମୁଁ ଦିନେ କହିଲି, ''ହରିଆ ମାଆ! ମୁଁ ତୁମ ବିଷୟରେ କିଛି ଜାଣିବାକୁ ଚାହୁଁଛି । ଯଦି ଖରାପ ନ ଭାବିବ ତୁମ ଜୀବନର ସବୁ କଥା ମତେ କୁହ ।'' କିଛି ସମୟ ଭାବିବା ପରେ ସେ ଯେଉଁ ଇତିହାସ କହିଲା, ତାହା ଏହିପରି–

–''ମୋତେ ଯେତେବେଳେ ୧୩ ବର୍ଷ ହୋଇଥିଲା, ଅମୁକ ଗାଁର ଠାକୁର ସାହେବଙ୍କ ଝିଅ ସାଂଗରେ ବାହାଘର ଯୌତୁକ ହିସାବରେ ଯାଇଥିଲି । ସେଇ ଗାଁର ଦାରୋଗାଙ୍କ ପୁଅ ସାଂଗରେ ମୋର ବିବାହ କରାଗଲା । ଆମେ ସ୍ୱାମୀ-ସ୍ତ୍ରୀ ଦୁଇଜଣ ସେମାନଙ୍କ ଘରେ ଚାକିରୀରେ ରହିଲୁ । ମୋ ସ୍ୱାମୀ କୁଅଁର ସାହେବଙ୍କ କାମ ଓ ମୁଁ ତାଙ୍କ ସ୍ତ୍ରୀଙ୍କ କାମ କରୁଥିଲି । ସାଧାରଣ ଖାଇବା ପିଇବା ମିଳି ଯାଉଥିଲା । କିଛି ବର୍ଷ ପରେ ଆମର ଗୋଟିଏ ପିଲା ହେଲା । ତା' ନାମ ହରି ରଖାଗଲା । ଥରେ ଗାଁରେ ହଇଜା ହେଲା । ମୋ ସ୍ୱାମୀ ସେଥିରେ ଚାଲିଗଲେ । ଗାଁର ଏକମାତ୍ର ବୈଦ୍ୟ ବଡ଼ ବଡ଼ ଲୋକଙ୍କର ଚିକିତ୍ସାରେ ଥିଲେ । ମୋ ସ୍ୱାମୀ ବିନା ଚିକିତ୍ସାରେ ମରିଗଲେ । ମାଲିକଙ୍କ ଘରକୁ ଖବର ପଠାଇଲି । ସେଠାରୁ କେହି ଶ୍ମଶାନ ଯିବା ପାଇଁ ଆସିଲେ ନାହିଁ । ମୁଁ କୌଣସି ପ୍ରକାରେ ଦୁଇ ଚାରିଜଣ ପଡ଼ୋଶୀଙ୍କ ସହାୟତାରେ ଦାହ ସଂସ୍କାର କଲି । ଘରକୁ ଫେରି ଦେଖିଲି ପୁଅକୁ ଝାଡ଼ା ଓ ବାନ୍ତି । ଔଷଧ ବୋଲି ଭଗବାନଙ୍କ ନାଁରେ ପିଆଜ ରସ ଦେବାକୁ ବନ୍ଦୋବସ୍ତ କରିବାବେଳେ, ଠାକୁର ସାହେବଙ୍କ ଘରୁ ଡାକରା ଆସିଲା । ବହୁତ କାକୁତି

ମିନତି କଲା ପରେ ମଧ୍ୟ ନିସ୍ତାର ମିଳିଲା ନାହିଁ। ବାଧ୍ୟ ହୋଇ ଗଲି ଓ ମାଲିକାଣୀଙ୍କ କାମ ସାରି, ମୁଣ୍ଡ ବାନ୍ଧି ଫେରିଲା ବେଳକୁ ଦେଖିଲି ମୋ ହରି ସବୁ ଦୁଃଖ ଭୁଲି ଚିରଦିନ ପାଇଁ ଶୋଇ ପଡ଼ିଛି। ଏହାପରେ ମୁଁ ପାଗଳୀ ପରି ହୋଇଗଲି। ସବୁବେଳେ ହରିକୁ ଝୁରି ହେଲି। କିଛି ଦିନ ପରେ ମତେ ପୁଣି ଠାକୁର ସାହେବଙ୍କ ଘରକୁ ଯିବାକୁ ପଡ଼ିଲା। ଆମେ ସେମାନଙ୍କ କିଣା ଗ୍ଧକର ପ୍ରାୟ ଥିଲୁ।

ଦୁର୍ଭାଗ୍ୟକୁ ମୋ ମାଲିକାଣୀର ଦୁଇ ପୁଅ ମରିଗଲେ। ମୋତେ ଅଲକ୍ଷଣୀ କହି ସେଠାରୁ ବାହାର କରି ଦିଆଗଲା। ମୁଁ ଏଇ ପାଖ ଗାଁକୁ ଆସି ମଜୁରୀ ଲାଗି ଜୀବନ ବିତାଇବାକୁ ଲାଗିଲି। ମୋତେ ଛୁଆମାନଙ୍କ ପ୍ରତି ଏମିତି ମୋହ ଥିଲା ଯେ ବିନା ପାରିଶ୍ରମିକରେ ସେମାନଙ୍କ କାମ କରେ। ଏସବୁ କରିବା ଦ୍ୱାରା ମୋତେ ହରିର କାମ କରିବା ପରି ଲାଗେ।

ସମ୍ଭବତଃ ମୁଁ ପୂର୍ବଜନ୍ମରେ କୌଣସି ପାପ କରିଥିବି, ତା'ରି ଫଳ ଭୋଗୁଛି। ଦିନେ ଗୋଟିଏ ଛୁଆକୁ ତା' ମାଆଠାରୁ ଆଣି ଖେଳାଉଥିଲି। କିଛି ସମୟ ମଧ୍ୟରେ କାହିଁକି କେଜାଣି ସେ ହାତଗୋଡ଼ ଲାଠି କରି ଆଖି ତରାଟି ମରିଗଲା। ତା'ପରଠାରୁ ଜାଣ ସାରା ଗାଁରେ ମୁଁ ଡାହାଣୀ ନାଁରେ ବଦନାମ ହୋଇଗଲି। ସ୍ତ୍ରୀଲୋକମାନେ ମୋତେ ଦେଖିଲା ମାତ୍ରେ ଛୁଆମାନଙ୍କୁ ଲୁଗ୍ଧଇଦିଅନ୍ତି। ବଡ଼ ବଡ଼ ପିଲା ମୋତେ 'ହରିଆ ମାଆ ଆସିଲା, ଡାହାଣୀ ଆସିଲା' କହି ଟେକାପଥର ଫୋପାଡ଼ନ୍ତି। ପ୍ରଥମେ ତ ଲୋକଙ୍କ ଘରୁ କିଛି ସାହାଯ୍ୟ ମିଳିଯାଉଥିଲା, ତାହା ବି ବନ୍ଦ ହୋଇଗଲା। ୫୦ ବର୍ଷ ହେଲା ଭିକ ମାଗି କୌଣସି ପ୍ରକାରେ ପେଟ ପୋଷୁଛି। କିନ୍ତୁ ଆଜି ବି କୌଣସି ଛୋଟ ପିଲାକୁ ଦେଖିଲେ ମୋ ହରିଆ କଥା ମନେ ପଡ଼ିଯାଏ।''

ସେ ଖଟ ତଳୁ ଗୋଟିଏ ଟିଣର ଗୋଲ ଡବା ବାହାର କଲା। ତା' ଭିତରୁ ପୁରୁଣା ଟୋପି ଓ କୁରୁତା ବାହାର କଲା। ଦୁଇଟି ରୁପାର କଡ଼ା ଓ ହନୁମାନ ମୂର୍ତ୍ତି ମଧ୍ୟ ଥିଲା। ସେ ସବୁ ଜିନିଷ ହରିର ଥିଲା। ସେ ଜିନିଷ ଦେଖାଇବା ସମୟରେ ଅଧୀର ହୋଇ ପଡ଼ିଲା ଓ ତା' ଆଖିରୁ ଅବିରତ ଅଶ୍ରୁଧାର ବହି ଗ୍ଧଲିଲା। ଜୋର୍ ଜୋର୍‌ରେ କାନ୍ଦି କାନ୍ଦି କହୁଥାଏ, ଭଗବାନ ଜାଣନ୍ତି, ମୁଁ ଗାଁରେ କାହାର କିଛି କ୍ଷତି କରି ନାହିଁ। ତଥାପି ଏମାନେ ମୋତେ ବଦନାମ କରି ଗ୍ଧଲିଛନ୍ତି। ମୋତେ ଏତେ ଅପମାନ ଦେଉଛନ୍ତି ଯେ

ଆଉ ସହି ହେଉନି । ଦୁନିଆଁରେ ଏତେ ଲୋକ ମରୁଛନ୍ତି, ହେଲେ ଏ ଅଭାଗିନୀର ମରଣ ବି ହେଉ ନାହିଁ ।

ମୁଁ ତାକୁ ସାନ୍ତ୍ୱନା ଦେଇ ଦୁଃଖିତ ମନରେ ସେ ଦିନ ଫେରିଲି । ଦୁଇତିନି ଦିନ ପରେ ମୋତେ ଗାଁରୁ ଯିବାକୁ ପଡ଼ିଲା କଲିକତା, ବିଶେଷ କାର୍ଯ୍ୟବଶତଃ । କଲିକତା ଆସି ଅନେକ ଜଞ୍ଜାଳ ମଧ୍ୟରେ ହରିଆ ମା' କଥା ଭୁଲିଗଲି । ତିନି ଚାରିବର୍ଷ ପରେ ଗାଁକୁ ଫେରି ଶୁଣିଲି ଯେ ଗାଁଲୋକ ସ୍ପଷ୍ଟ ଦିବାଲୋକରେ ହରିଆ ମା'ର ହତ୍ୟା କରିଦେଇଛନ୍ତି ।

ଘଟଣାଟି ଏଇପରି । ଦିନେ ଗାଁର ଏକ ପ୍ରତିଷ୍ଠିତ ଶେଠ୍‌ର ଛୁଆ ବେମାର ହେଲା । ସଂଯୋଗ ବଶତଃ ତା' ପୂର୍ବଦିନ ହରିଆ ମା' ତାଙ୍କ ଘରୁ ରୁଟି ଆଣିବାକୁ ଯାଇଥିଲା । ତେଣୁ ତା' ଉପରେ ସମସ୍ତଙ୍କ ସନ୍ଦେହ ହେବା ସ୍ୱାଭାବିକ । ଚାରିପାଞ୍ଚଜଣ ତା' ପାଖକୁ ଗଲେ ଓ ଗୋଟିଏ ଗିନାରେ ତା'ର ଛେପ ପକାଇବାକୁ କହିଲେ । ସେଦିନ ତା'ର ଏମିତି ଗୋଟାଏ ଜିଦ୍ ଆସିଲା ଯେ ସେ ଛେପ ପକାଇବାକୁ ମନା କଲା । ନିରୀହ ବୁଢ଼ୀଟିର ଛେପ ବାହାର କରିବା ପାଇଁ ଦୁଇତିନି ଜଣ ତା' ତଣ୍ଟିକୁ ଚିପିଲେ । ଦୁର୍ବଳ ଓ ବେମାର ବୁଢ଼ୀ ଏ ଜୋର ଜୁଲମ ସହି ପାରିଲା ନାହିଁ । ଛେପ ସଂଗେ ସଂଗେ ତା'ର ଜୀବନ ବାହାରିଗଲା ।

ଘରକୁ ଆସି ସେମାନେ ଦେଖିଲେ ଛୁଆଟି ବେଶ୍ ସୁସ୍ଥ ଅଛି ଓ ଖେଳାଖେଳି କରୁଛି । ଗାଁର ଜାଣିବା ଶୁଣିବା ଲୋକେ କହିଲେ, ଯଦି ତା'ଠାରୁ ଜବରଦସ୍ତି ଛେପ ଅଣା ଯାଇ ନଥାନ୍ତା, ଛୁଆର ଜୀବନ ରହି ନଥାନ୍ତା । ଡାକ୍ତର ଓ ପୁଲିସକୁ କୌଣସି ମତେ ରାଜି କରାଇ ମାମଲା ଦବେଇ ଦିଆଗଲା । ସେ ଗରିବ ସ୍ତ୍ରୀଲୋକ ପାଇଁ ଶେଠ୍‌ଜୀଙ୍କ ସଂଗରେ କିଏ ଶତ୍ରୁତା କରନ୍ତା?

କିଛି ଦିନ ପରେ ଶେଠ୍‌ଜୀଙ୍କ ଘରେ ଛୁଆର ସ୍ୱାସ୍ଥ୍ୟଲାଭ ଖୁସିରେ ହନୁମାନଙ୍କ ପାଖରେ ପ୍ରସାଦ ଲଗାଯାଇ ସମସ୍ତଙ୍କୁ ଭୋଜି ଦିଆଗଲା । ଗାଁର ପଚାଶ ଲୋକ ପ୍ରସାଦ ଖାଉ ଖାଉ ହରିଆ ମା'ର ମୃତ୍ୟୁ ବିଷୟରେ କଥାବାର୍ତ୍ତା ହେଉଥିଲେ –ଯେମିତି ଏଇଟା ଗୋଟାଏ ସାଧାରଣ ଘଟଣା । ମୁଁ ସେଇ ନିମନ୍ତ୍ରଣକୁ ଯାଇଥିଲି ସତ, କିନ୍ତୁ କିଛି ଖାଇ ପାରିଲି ନାହିଁ । ମୋତେ ସେଠାର ପବନରେ ହରିଆ ମା'ର ଅନ୍ତିମ ସମୟର ଚିତ୍କାର ଶୁଣା ଯାଉଥିଲା ।



# ହମୀଦ ଖାଁ ଭାଟୀ

ପ୍ରତ୍ୟେକ ଗାଁ ବା ସହରରେ ଏମିତି କେତେ ବ୍ୟକ୍ତି ଜନ୍ମ ହୋଇଥାନ୍ତି, ଯାହାଙ୍କୁ ଲୋକେ ବହୁତ ଦିନ ଯାଏଁ ମନେ ରଖନ୍ତି ଓ ତାଙ୍କର ଅଭୁଲା ସ୍ମୃତି ଜନମାନସରେ ଅଙ୍କିତ ହୋଇ ରହିଯାଏ। ଏହିପରି ବ୍ୟକ୍ତିବିଶେଷ ଯେ କେବଳ ଧନୀ ବା ବିଦ୍ୱାନ ପରିବାରରେ ଜନ୍ମ ନିଅନ୍ତି, ଏପରି କଥା ନୁହେଁ।

ବିକାନୀରର ଉତ୍ତରରେ ପୁଗଲ ନାମରେ ଗୋଟିଏ ଜାଗା ଅଛି। କୁହାଯାଏ ଯେ ଏହି ଅଂଚଳରେ ପଦ୍ମିନୀ ଜାତୀୟ ସ୍ତ୍ରୀମାନେ ଥିଲେ। ଯାହା ହେଉ, ଆଜି ସେହି ଅଞ୍ଚଳ ଅନୁର୍ବର। ପାଣିର ଅଭାବ। ଗାଁଗୁଡ଼ିକ ଛୋଟ ଛୋଟ ଓ ଦୂର ଦୂର।

ଏଠାକାର ବାସିନ୍ଦାଙ୍କର ମୁଖ୍ୟ ଧନ୍ଦା ମେଣ୍ଢା ପାଳନ। କିଛି କିଛି ବ୍ରାହ୍ମଣ ଓ ବ୍ୟବସାୟୀ ଅଛନ୍ତି। ସେମାନେ ଦୋକାନ କରିଥାନ୍ତି। ଏମାନଙ୍କ ବ୍ୟତୀତ ବହୁ ସଂଖ୍ୟକ ମୁସଲମାନ ଗୁଜରମାନେ ରହନ୍ତି–ସେମାନେ ବହୁତ ଉତ୍ତମ ଧରଣର ଗାଈ ପାଳିଥାନ୍ତି। ସେମାନଙ୍କ ଠାରୁ ଆଦାୟ କରୁଥିବା କ୍ଷୀର ଓ ଘିଅ ବିକି ଜୀବନ ବିତାନ୍ତି। ସେମାନେ ଗାଈମାନଙ୍କର ବହୁତ ଯତ୍ନ ନିଅନ୍ତି, ଯାହା ଫଳରେ ଆମଦାନୀ ଭଲ ହୁଏ ଓ ଭଲ ପ୍ରଜାତିର ବାଛୁରୀ ମଧ୍ୟ ବାହାରନ୍ତି।

୧୯୫୧ ରେ ସେଠାରେ ଘୋର ଦୁର୍ଭିକ୍ଷ ପଡ଼ିଲା। କୂଅମାନଙ୍କରୁ ପାଣି ଶୁଖିଗଲା। ଘରମାନଙ୍କରେ ଯାହା କିଛି ଛଣକୁଟା ଓ ଗୋଖାଦ୍ୟ ଥିଲା, ସେଥିରେ ସେହି ବର୍ଷ ପଶୁମାନଙ୍କର ଜୀବନ ରକ୍ଷା ହୋଇଗଲା। ତା' ପର ବର୍ଷ ମଧ୍ୟ ବର୍ଷା ହେଲା ନାହିଁ– ଦୁର୍ଭିକ୍ଷ ଲାଗି ରହିଲା ଓ ଲୋକମାନଙ୍କର ସାହସ ଭାଂଗିବାକୁ ଲାଗିଲା। କଲିକତାର ମାରୱାଡି ରିଲିଫ ସୋସାଇଟି ସେହି ଦୁଇବର୍ଷ ସେଠାରେ ଉଦ୍ଧାର କାର୍ଯ୍ୟ କରିଥିଲେ। ମୁଁ ମଧ୍ୟ ଦ୍ୱିତୀୟ ବର୍ଷରେ କିଛି ସମୟ ପାଇଁ ସାହାଯ୍ୟକାରୀ ଭାବରେ ଥିଲି। ଆମେ ଦେଖୁଥିଲୁ ପ୍ରତିଦିନ ହଜାର ହଜାର ସ୍ତ୍ରୀ-ପୁରୁଷ ଓ ପିଲା ନିଜର ଜିନିଷ ପତ୍ର ନେଇ ପାଦରେ ଚ୍ଚାଲି ଚ୍ଚାଲି କୋଟା, ବାରାଂ ଓ ମାଳବା ଆଡ଼କୁ ଯାଉଥିଲେ। ଚ୍ଚାରି ପାଞ୍ଚ ମାସ ପରେ ଫେରିବାର ସମ୍ଭାବନା ଥିବାରୁ ଗାଈ ବଳଦଙ୍କ ଉପରେ ଜିନିଷପତ୍ର ଲଦି ନେଇ ଯାଉଥିଲେ। ଘର ଗାଁ ଛାଡ଼ି ଯିବାର ଦୁଃଖ ଓ

ଅଭାବୀ ଅବସ୍ଥା ସମସ୍ତଙ୍କ ମୁହଁରେ ଥିଲା । ବହୁତ ଲମ୍ବା ରାସ୍ତା ଓ ବୈଶାଖର ଗରମ ହେତୁ ସମସ୍ତଙ୍କ ମୁଖମଣ୍ଡଳରେ କ୍ଳାନ୍ତି ଓ ଅବସାଦର ଝଲକ ସ୍ପଷ୍ଟ ଦିଶୁଥିଲା । ବାଟ କଟେଇବାକୁ ସ୍ତ୍ରୀଲୋକମାନେ ଭଜନ ଗାଇ ଗାଇ ଗ୍ଲୁଥାନ୍ତି । ସେମାନଙ୍କୁ ପଗ୍ଳରିଲେ ସମସ୍ତେ ଏକା ଉତ୍ତର ଦିଅନ୍ତି କି ପାଣି ନାହିଁ, ଶସ୍ୟ ନାହିଁ, ଘାସ ନାହିଁ, ଗୋ ଖାଦ୍ୟ ନାହିଁ– କଣ ଖାଇବେ ଆଉ କଣ ବା ପଶୁମାନଙ୍କୁ ଦେବେ ।

ଆମେ ପୁଗଲ ଅଂଚଳର ଗାଁମୁଣ୍ଡ ପଡ଼ିଆମାନଙ୍କରେ ଗାଈ ବଳଦଙ୍କର ବହୁତ କଙ୍କାଳ ଓ ଶବ ଦେଖିବାକୁ ପାଇଲୁ । ବୁଢ଼ା ବଳଦ ଓ ଗାଈମାନଙ୍କୁ ଲୋକେ ଜଙ୍ଗଲରେ ଛାଡ଼ି ଦେଉଥିଲେ । ସେଠାରେ ଭୋକ, ଶୋଷ ଓ ଗରମରେ ସେମାନଙ୍କ ପ୍ରାଣ ବାହାରି ଯାଉଥିଲା । ସମୟ ସମୟରେ ଅର୍ଦ୍ଧମୃତ ଗାଈମାନଙ୍କୁ ଦେଖିବାକୁ ମିଳୁଥିଲା । ସେମାନଙ୍କ ପାଇଁ ଯଥାଶକ୍ତି ଗୋଖାଦ୍ୟ ଓ ପାଣିର ବନ୍ଦୋବସ୍ତ କଲୁ, କିନ୍ତୁ ସେମାନଙ୍କ ସଂଖ୍ୟା ଏତେ ବେଶୀ ଥିଲା ଯେ ସମସ୍ତଙ୍କ ପାଇଁ ସେବା ବନ୍ଦୋବସ୍ତ କରି ହେଲା ନାହିଁ । କେବଳ ଖୁବ୍ ଅଳ୍ପଙ୍କୁ ସେବା ଦେବା ସମ୍ଭବ ହେଲା । ସ୍ୱଚ୍ଛଳ ଲୋକେ ମଧ୍ୟ ନିଜ ପଶୁଙ୍କୁ ପାଣି ଓ ଗୋଖାଦ୍ୟର ଅଭାବ ଯୋଗୁଁ ବେଦରକାରୀ ଗାଈ ଓ ବଳଦଙ୍କୁ ଜଂଗଲରେ ଛାଡ଼ି ଦେଇଥିଲେ ।

ପ୍ରାୟ ପ୍ରତ୍ୟେକ ଘରେ ଏହିପରି ଅବସ୍ଥା । ତେଣୁ କେହି କାହାକୁ ନିନ୍ଦା ବା ପ୍ରଶଂସା କରିବା ସମ୍ଭବ ନଥିଲା ।

ସେହି ଅଂଚଳର ଗୋଟିଏ ଗାଁରେ ଦିନ ଦିପହରେ ପହଞ୍ଚିଲି । ପୃଥିବୀ ଉତ୍ତପ୍ତ ହୋଇ ଧୁ ଧୁ ଜଳୁଥିଲା । ଜଳନ୍ତା ଅଂଗାର ସଦୃଶ ଗରମ ବାଲି ଝଡ଼ ହେଉଥିଲା । କୂଅ ପୋଖରୀର ପାଣି କେଉଁ କାଳରୁ ଶୁଖି ଯାଇଥିଲା । ଲୋକେ ଦଶ ପନ୍ଦର ମାଇଲ ଦୂରରୁ ପାଣି ଆଣି ପିଉଥିଲେ । ଅଧିକାଂଶ ଲୋକ ଗାଁ ଛାଡ଼ି ଗ୍ଳଲି ଯାଇଥିଲେ, କେବଳ ଅଳ୍ପ କେତେକ ବ୍ରାହ୍ମଣ ଓ ବ୍ୟବସାୟୀ ରହି ଯାଇଥିଲେ । ସେଠାରେ ମୁଁ ହମୀଦ ଖାଁ ଭାଟୀଙ୍କ ବିଷୟରେ ଶୁଣିଲି ଓ ତାଙ୍କୁ ତାଙ୍କ ଘରେ ଯାଇ ଦେଖା କଲି ।

ମାଟିଘର, କିନ୍ତୁ ସଫା ସୁତରା ଥିଲା । ଗୋବରରେ ଲିପା ହୋଇଥିଲା । ହମୀଦ ଖାଁଙ୍କ ବୟସ ୬୫-୭୦ ମଧ୍ୟରେ ହେବ । ଶରୀରର ଗଠନ ଦେଖି

ମନେ ହେଉଥିଲା ନିଶ୍ଚୟ ବଳିଷ୍ଠ ହୋଇଥିବେ ଆଗରୁ। ବର୍ତ୍ତମାନ ତ କଙ୍କାଳସାର ଚେହେରା ଓ ମୁହଁରେ ଉଦାସ ଭାବ।

ନମସ୍କାର ଆଦାନ ପ୍ରଦାନ ପରେ ପଚ୍ରିଲି, "ଖାଁ ସାହେବ! ଗାଁର ପ୍ରାୟ ସବୁଲୋକ ଚ୍ଳିଯାଇଛନ୍ତି ଗାଁ ଛାଡ଼ି। ଆପଣ ଏପରି ସମୟରେ କାହିଁକି ଏକୁଟିଆ ଏଠାରେ ରହିଛନ୍ତି?" ସେ କିଛି ସମୟ ଧରି ମୋ ମୁହଁକୁ ଉଦାସ ଆଖିରେ ଚ୍ହିଁ ରହିଲେ। କହିଲେ–"ଆଲ୍ଲା ମାଲିକ ଅଟନ୍ତି, ତାଙ୍କ ଭରସାରେ ରହିଛି। କେବେ ନା କେବେ ବର୍ଷା ହେବ। ପୁଅ-ବୋହୂମାନେ ସେମାନଙ୍କ ପିଲାଙ୍କୁ ଓ ଧନକୁ (ଏଠାରେ ଗାଈ ବଳଦ ଓଟ ଇତ୍ୟାଦିଙ୍କୁ ଧନ କହୁଥିଲେ) ନେଇକରି ମାସେ ଆଗରୁ ମାଳବା ଗଲେଣି। ମତେ ସେମାନଙ୍କ ସଂଗରେ ଯିବା ପାଇଁ ବହୁତ ଜିଦ୍ କରୁଥିଲେ; କିନ୍ତୁ ଆପଣ କହନ୍ତୁ, ମୋର ଧବଳୀ ଓ କାଳୀ ଗାଈକୁ ଛାଡ଼ି କେମିତି ଯାଇଥାନ୍ତି? ସେମାନେ ତ ମାଇଲିଏ ବାଟ ଚ୍ଳି ପାରୁ ନାହାନ୍ତି। (ଧବଳୀ ଓ କାଳୀ ତାଙ୍କର ଦୁଇଟି ବୁଢ଼ୀ ଗାଈ। ସେଥିରୁ ଜଣେ ଛୋଟୀ ଓ ଅନ୍ୟଟି ବେମାର।) ଆଜି ସେମାନେ ଏ ଅବସ୍ଥାକୁ ଆସିଗଲେଣି, ନ ହେଲେ ଏ ଦୁଇଜଣ କେତେ କେତେ ହେଟାବାଘଙ୍କ ସଂଗରେ ଜୁଝିଛନ୍ତି। ସେମାନଙ୍କ ପରି କ୍ଷୀର ଦେଉଥିବା ଗାଈ ଆଖପାଖରେ ନଥିଲେ। ତିନି ଚ୍ରି ସେର ବାଛୁରୀ ପିଉଥିଲେ ଆଉ ଦଶ-ବାର ସେର ପ୍ରତ୍ୟେକ ଗାଈରୁ ଆମ ପାଇଁ ମିଳୁଥିଲା। ଏ ଦୁଇଜଣ ମୋ ଘରର ଝିଅ। ଯେଉଁ ବର୍ଷ ମୋ ସାନପୁଅ ଜନ୍ମ ହୋଇଥିଲା, ଏ ଦୁଇଟି ଗାଈ ପ୍ରାୟ ସେଇ ସମୟରେ ଜନ୍ମିଥିଲେ। ୨୦ ବର୍ଷ କାଳ ଆମେ ଏମାନଙ୍କ କ୍ଷୀର ପିଇ ଆସୁଛୁ। ବର୍ତ୍ତମାନ ଆପଣ କହନ୍ତୁ, ଏମାନଙ୍କ ବାର୍ଦ୍ଧକ୍ୟରେ ଏମାନଙ୍କୁ କୁଆଡୁକୁ ବାହାର କରିଦେବି? କିଏ କଣ ନିଜ ଝିଅ ଭଉଣୀଙ୍କୁ ଘରୁ ତଡ଼ିଦିଏ?" କଥା କହୁଥିବା ସମୟରେ ତାଙ୍କର ସ୍ୱର କାନ୍ଦୁରା ଶୁଭୁଥିଲା, ଆଖିରୁ ଲୁହ ଟୋପା ଟୋପା ଗଡ଼ି ପଡୁଥିଲା।

ଆହୁରି କେତେ କଥାବାର୍ତ୍ତା ହୋଇଥାନ୍ତୁ, କିନ୍ତୁ ବାହାର ପଟୁ ଧବଳୀ ଓ କାଳୀଙ୍କର ରମ୍ଭାରଡ଼ି ଶୁଭିଲା– ବୋଧ ହୁଏ ଭୋକିଲା ବା ତୃଷାର୍ତ୍ତ ଥିବେ। ହମୀଦ ଖାଁ ଉଠିକରି ବାହାରକୁ ଗଲେ।

ରାତିରେ ଗାଁର ମୁଖିଆ ପଣ୍ଡିତ ବଂଶୀଧରଙ୍କ ସଂଗେ ଆଠଦଶ ଜଣ ଦେଖା କରିବାକୁ ଆସିଲେ। ସେମାନଙ୍କ କହିବା ମୁତାବକ ପଚ୍ଶ ବର୍ଷ

ଭିତରେ ଏମିତି ଦୁର୍ଭିକ୍ଷ ପଡ଼ି ନଥିଲା। ହମୀଦ ଖାଁ ବିଷୟରେ କଥା ପଡ଼ୁ ପଡ଼ୁ କହିଲେ, "ସେ ବଡ଼ ଜିଦ୍‌ଖୋର। ନିଜ ପାଇଁ ଦି' ଓଳି ଖାଇବା ଜୁଟାଇ ପାରୁନି, ହେଲେ ଏ ଗାଈ ଦି'ଟାଙ୍କ ପାଇଁ ପ୍ରାଣ ଦେଇଦେବ। ଦିନରେ ଏତେ ଖରା ଯୋଗୁଁ ବାହାରି ହୁଏ ନାହିଁ–ତେଣୁ ସେ ରାତି ଦୁଇଟାରେ ଉଠି ପାଞ୍ଚ ମାଇଲ ଦୂରରେ ଥିବା ପୋଖରୀରୁ ମାଠିଆଏ ପାଣି ଆଣେ। ଘରଲୋକେ ଯେଉଁ ଶସ୍ୟ ରଖିକରି ଯାଇଥିଲେ ସେଥିରୁ ଅନେକ ପରିମାଣ ବିକ୍ରୀ କରି ଏ ଗାଈ ଦୁଇଟିଙ୍କ ପାଇଁ ଗୋଖାଦ୍ୟ କିଣି ଆଣିଲା। ଯେତେବେଳେ ସେ ଖାଦ୍ୟ ସରିଗଲା, ସେତେବେଳେ ସେ ନିଜ ଘରକୁ ଚଢ଼ା ସୁଧରେ ବନ୍ଧକ ରଖି ଆହୁରି ଗୋଖାଦ୍ୟ ଆଣିଛି।"

ଖରାଦିନରେ ଏହି ଅଂଚଳରେ ରାତିରେ ଥଣ୍ଡା ପଡ଼େ। ମତେ କିନ୍ତୁ ନିଦ ଆସୁ ନଥିଲା ସେ ରାତିରେ। ଭାବୁଥିଲି, ପ୍ରକୃତରେ କଣ ହମୀଦ ଖାଁ ମୂର୍ଖ ଓ ଜିଦ୍‌ଖୋର! କଥାବାର୍ତ୍ତାରୁ ତ ଏପରି ମନେ ହେଉ ନଥିଲା। ଗୋଟିଏ କଥା ବୁଝି ହେଉ ନଥିଲା। ମୁସଲମାନ ହମୀଦ ଖାଁ ପାଇଁ 'ଗାଈ' ତ 'ମାତା' ନଥିଲା, ସେ କାହିଁକି ଏ ଦୁଇଟି ବୁଢ଼ୀ ଗାଈ ପାଇଁ ନାନା କଷ୍ଟ ସହି ଗୋଖାଦ୍ୟ ଯୋଗାଡ଼ରେ ଲାଗିଛି? ଘର ମଧ୍ୟ ବନ୍ଧା ପକେଇଛି। କିଛି ଦିନ ପରେ ଏମିତି ଅବସ୍ଥା ହେବ ଯେ ସୁଧ ମୂଳ ମିଶେଇ ଶୁଝିବା ଅସମ୍ଭବ



ହୋଇଯିବ । ଯେତେବେଳେ ତା'ର ପୁଅ ଓ ପିଲାମାନେ ମାଳବାରୁ ଫେରିବେ କ୍ଲାନ୍ତଶ୍ରାନ୍ତ ହୋଇ, ସେମାନଙ୍କ ପାଇଁ ବୋଧହୁଏ ଏ ପୈତୃକ ଘର ଖଣ୍ଡିକ ଆଉ ନଥିବ ।

ଫେରି ଆସିବା ପୂର୍ବରୁ ହମୀଦ ଖାଁ ସଂଗେ ଦେଖା କରିବାର ଇଚ୍ଛା ହେଲା । ସକାଳୁ ସକାଳୁ ଯାଇ ଦେଖିଲି ଯେ ଧବଳୀ ଓ କାଳୀଙ୍କୁ ତନ୍ମୟ ହୋଇ ଆଉଁସୁଛନ୍ତି ହମୀଦ ଖାଁ । ଗାଈ ଦୁଇଟି ତାଙ୍କ ଆଡ଼କୁ କରୁଣ ଦୃଷ୍ଟିରେ ଚାହିଁ ରହିଥାନ୍ତି—ସତେ କି କହୁଥାନ୍ତି, ସମସ୍ତେ ତ ଗାଁ ଛାଡ଼ି ଚାଲିଗଲେ, ତୁମେ ଏପରି ଭୋକିଲା ଶୋଷିଲା ହୋଇ ମୃତ୍ୟୁକୁ କାହିଁକି ଡାକୁଛ? ଆମକୁ ଆମ ଭାଗ୍ୟ ଉପରେ ଛାଡ଼ି ତୁମେ ତୁମ ପିଲାଙ୍କ ପାଖକୁ ଚାଲିଯାଅ ।

ସୋସାଇଟି ତରଫରୁ ଅଳ୍ପ ବହୁତ ବ୍ୟବସ୍ଥା କରି, ମନେ ମନେ ସେହି ଅପାଠୁଆ ମୁସଲମାନକୁ ପ୍ରଣାମ କରି, ଚିନ୍ତିତ ମନରେ ସେ ଗାଁ ଛାଡ଼ିଲି । ପନ୍ଦରବର୍ଷ ପରେ ମଧ୍ୟ ହମୀଦ ଖାଁଙ୍କ ସେଇ ଚେହେରା ଭୁଲିନାହିଁ । ଏ ପର୍ଯ୍ୟନ୍ତ ମନରେ ଗୋଟିଏ ପ୍ରଶ୍ନ ଉଠେ, ବାସ୍ତବିକ୍ ଗୋରକ୍ଷକ କିଏ ଥିଲା ସେ ଗାଁରେ— ପଣ୍ଡିତ ବଂଶୀଧର ଓ ଲାଲା ରାମକିଷନ? ନା ହମୀଦ ଖାଁ ଭାଟୀ??



# ଚନ୍ଦରୀ ନାନୀ

ଆଗ କାଳରେ ପୂର୍ବ ରାଜସ୍ଥାନରେ ଗୋଟିଏ ପ୍ରଥା ଥିଲା । ଏକା ଗାଁର ପୁଅ ଝିଅଙ୍କ ମଧ୍ୟରେ ବିବାହ ହେଉ ନଥିଲା । ବିବାହ ଆଖପାଖ ଗ୍ରାମରେ ହେଉଥିଲା । ଯେଉଁ ଗାଁକୁ ବରଯାତ୍ରୀ ଆସୁଥିଲେ, ସେ ଗାଁରେ ବରପକ୍ଷଙ୍କ ଗାଁର ଯେତେ ବି ଝିଅ ବିଭା ହୋଇଥାନ୍ତି, ସେ ସମସ୍ତଙ୍କ ଘରକୁ ମିଠାଇ ପଠାଯାଉଥିଲା । ପୁଣି ପ୍ରତ୍ୟେକ ଝିଅକୁ, ସେ ଯେଉଁ ଜାତିର ହୋଇଥାଉ ନା କାହିଁକି, ତାର ବୟସ ଅନୁସାରେ ଝିଆରୀ, ଭଉଣୀ, ପିଉସୀ–ଏମିତି ମାନ୍ୟରେ ଡକାଯାଏ । ଏମିତି କି ମୁସଲମାନ ପରିବାର ଲୋକଙ୍କୁ ମଧ୍ୟ କାକା, ଦଦେଇ, ଦେଠେଇ, ଖୁଡ଼ୀ, ପିଉସୀ ଏମିତି ମାନ୍ୟ କରାଯାଉଥିଲା ।

ବର୍ତ୍ତମାନ ଆଧୁନିକତାର ପ୍ରଭାବ ଓ ଗମନାଗମନର ସୁବିଧା ହେତୁ ଗାଁଗୁଡ଼ିକର ସହର ସହିତ ଯୋଗାଯୋଗ ଉତ୍ତମ ହୋଇଗଲାଣି । ଏସବୁ କାରଣରୁ ଏପରି ସଂପର୍କ ଆସ୍ତେ ଆସ୍ତେ ହଜିଯିବାକୁ ବସିଲାଣି ।

ଶହେ ବର୍ଷ ପୂର୍ବର କଥା । ଗାଁମାନଙ୍କରେ ଏପରି ସଂପର୍କ ଖୁବ୍ ଭଲରେ ଚାଲୁଥିଲା । ଚନ୍ଦରୀ ନାନୀର କାହାଣୀ ସେଇ ସମୟର । ସେ ବିକାନୀରର ଏକ ମଧ୍ୟବିତ୍ତ ବ୍ରାହ୍ମଣ ପରିବାରର ଝିଅ । ସେ ସମୟରେ ବିବାହ ଉତ୍ସବରେ ଗ୍ରାମର ସମସ୍ତେ ଯୋଗ ଦେଉଥିଲେ ଓ କର୍ତ୍ତାପକ୍ଷଙ୍କୁ ସମସ୍ତ ପ୍ରକାର ସାହାଯ୍ୟ କରୁଥିଲେ । ଆର୍ଥିକ ସାହାଯ୍ୟ ଦେଇ ପରିବାରର ବୋଝ ମଧ୍ୟ ହାଲୁକା କରୁଥିଲେ ।

ଚନ୍ଦରୀ ନାନୀର ବାରବର୍ଷ ବୟସରେ ବିବାହ ହୋଇଥିଲା । ସେ ସମୟରେ ଚାରିପାଞ୍ଚବର୍ଷ ପରେ ଶାଶୁଘରକୁ ଯିବାର ପ୍ରଥା ଥିଲା । ଏ ମଧ୍ୟରେ ତାଙ୍କ ସ୍ୱାମୀଙ୍କର ଦେହାନ୍ତ ହୋଇଗଲା । ସେ ଆଉ ଶାଶୁଘର ଯାଇପାରିଲେ ନାହିଁ ଓ ଗାଁରେ ରହିଗଲେ । ତାଙ୍କୁ ଗାଁରେ ଆଉ କଣ କେବେ ଡକା ହେଉଥିଲା ଆମକୁ ଜଣା ନାହିଁ, ଆମେ ସବୁ ପିଲାମାନେ ପିଉସୀ ହିସାବରେ ତାଙ୍କୁ ଚନ୍ଦରୀ ନାନୀ ବୋଲି ଡାକୁଥିଲୁ । ଆମ ପିଲାବେଳକୁ ସେ ବୟସ୍କା ହୋଇ ସାରିଥିଲେ ଏବଂ ତାଙ୍କ ବାପମାଆ ମଧ୍ୟ ପରଲୋକବାସୀ ହୋଇ ସାରିଥିଲେ ।

ସ୍ୱଭାବରେ ନୀତିବାନ୍ ଚନ୍ଦରୀ ନାନୀ ନିଜ କର୍ମ କୁଶଳତାରୁ ଜୀବନ

ନିର୍ବାହ କରୁଥିଲେ। ପ୍ରାତଃ ଗ୍ଟରିଟା ବେଳୁ ଚକ୍କିରେ ୮/୧୦ ସେର ଶସ୍ୟ ପେଷି ଦେଉଥିଲେ। ସେ ସମୟରେ ଦୁଇଅଣା ଅଢ଼େଇଅଣା ଆୟ ହେଉଥିଲା। ତାଙ୍କୁ କେବେ କାମର ଅଭାବ ହେଉ ନଥିଲା। କାରଣ ତାଙ୍କର କାମ ପରିଷ୍କାର ଓ ଓଜନ ଠିକ୍। ତାଙ୍କର ଆବଶ୍ୟକତା କମ୍ ଥିଲା, ତେଣୁ ଚଳିବାରେ ଅସୁବିଧା ନଥିଲା। ତାଙ୍କୁ ସମସ୍ତେ ଭଲ ପାଉଥିଲେ। ସେ ଗାଁର ଛୁଆମାନଙ୍କର ଯତ୍ନ ନେବା ସାଙ୍ଗକୁ ରୋଗଗ୍ରସ୍ତ ଲୋକଙ୍କର ସେବା ମଧ୍ୟ କରିବାକୁ ଆଗେଇ ଆସୁଥିଲେ। ସେ ଆସିଗଲେ ବିପଦ ସମୟରେ ଲୋକମାନଙ୍କୁ ସାହସ ମିଳିଯାଉଥିଲା। ଯାହାର ଖୁବ୍ ସକାଳୁ ଉଠିବାର ଦରକାର ଥାଏ, ଚନ୍ଦରୀ ନାନୀ ତା'ର ଆଲାର୍ମ ଘଡ଼ି। ସବୁ ଛୁଆଙ୍କ ପାଇଁ ସେ ଗଳ୍ପାଘର। କଣ୍ଢେଇର ଲୁଗାପଟା, ଗୁଡ଼ି ତିଆରି ପାଇଁ ଅଠା ଓ ନାନାଦି ପିଲାଙ୍କ ଜିନିଷ ଯୋଗାଡ଼ିବାରେ ସେ ନିପୁଣ।

ମୁଁ ଯେବେ ବି ସକାଳୁ ଉଠି ପଡ଼େ, ଚନ୍ଦରୀ ନାନୀର ସୁମଧୁର ଭଜନ ଶୁଣିବାକୁ ମିଳେ। ସେ ସଂଗୀତ ଶିକ୍ଷା କରି ନଥିଲେ, କିନ୍ତୁ ତାଙ୍କର ସୁମଧୁର ସ୍ୱର ଓ ତାଳ ଜ୍ଞାନ ଥିଲା। ବିଧବା ହୋଇଥିବା ଯୋଗୁଁ ବିବାହ ଉତ୍ସବରେ ଗାଉ ନଥିଲେ। ତାଙ୍କ ବିନା ଭଜନ ଓ ରାତ୍ରି ଜାଗରଣ ଜମୁ ନଥିଲା। ସୁରଦାସ ଓ ମୀରାଙ୍କ ଭଜନ ସେ ଖୁବ୍ ସୁନ୍ଦର ଗାଉଥିଲେ ଓ ସମସ୍ତେ ତାହା ଶୁଣି ତନ୍ମୟ ହୋଇ ଯାଉଥିଲେ।

ସମୟର ଗତିରେ ସେ ଆସ୍ତେ ଆସ୍ତେ ବୃଦ୍ଧା ହୋଇଗଲେ। ତାଙ୍କ ହାତ ଥରିଲା ଓ ସ୍ୱରରେ ମାଧୁରିମା ରହିଲା ନାହିଁ। ଗାଁରୁ ତୀର୍ଥଯାତ୍ରା କରୁଥିବା ଲୋକେ ସଂଗରେ ଯିବା ପାଇଁ ଡାକୁଥିଲେ, କିନ୍ତୁ ସେ ଯାଉ ନଥିଲେ। ଏପରି ଖର୍ଚ୍ଚ ତାଙ୍କୁ ବିଳାସ ପରି ଲାଗୁଥିଲା।

ଦିନେ ସେ ମୋତେ ଡାକିଲେ ଓ କହିଲେ, ମୋ ସ୍ୱାସ୍ଥ୍ୟ ଖରାପ ହେବାକୁ ବସିଲାଣି– ମୋର ଗୋଟିଏ ଇଚ୍ଛା ଅଛି, ମୋ ଶାଶୁଘର ଗାଁରେ କୂଅଟିଏ ଖୋଳାଇବା। ସେଠାର ଏକମାତ୍ର କୂଅ ଖରାଦିନେ ଶୁଖିଯାଏ। ତୁମେ ମୋ ପାଇଁ କୂଅ ଖୋଳାଇବାରେ କେତେ ଖର୍ଚ୍ଚ ହେବ ବୁଝି ଦେବ କି?

ମୋତେ ଲାଗିଲା ଚନ୍ଦରୀ ନାନୀଙ୍କ ମୁଣ୍ଡ ବିଗିଡ଼ି ଗଲାଣି। ଦିନକୁ ଦୁଇଓଳି ଖାଇବା ପାଇଁ ଧନ ଯୋଗାଡ଼ କରିବା କଷ୍ଟକର ହେଉଛି, କିନ୍ତୁ କୂଅ ଖୋଳାଇବା ତ ଏକ ବିରାଟ ଖର୍ଚ୍ଚସାଧ୍ୟ ବ୍ୟାପାର।

ଚନ୍ଦରୀ ନାନୀ ସପ୍ତାହେ ଦୁଇ ସପ୍ତାହ ପରେ ଆମ ଘରକୁ ଆସିଲେ । ତାଙ୍କ ବାଡ଼ିଧରା ଦୁର୍ବଳ ଶରୀର ଦେଖି ମତେ ବ୍ୟସ୍ତ ଲାଗିଲା । ତାଙ୍କ ପ୍ରଶ୍ନଟିକୁ ମୁଁ ବହୁତ ସହଜ ଭାବରେ ନେଇଥିବାରୁ ନିଜକୁ ଦୋଷୀ ମନେ କରୁଥିଲି । ପିଲା ଦିନେ ତାଙ୍କୁ କେତେ ହଇରାଣ ନ କରିଛି, ତାଙ୍କ ଠାରୁ କେତେ ସ୍ନେହ ନ ପାଇଛି, କେତେ କାହାଣୀ ନ ଶୁଣିଛି, ଆଜି ତାଙ୍କର ଛୋଟ କାମଟିଏ କରିପାରିଲି ନାହିଁ । ମନରେ ଗ୍ଲାନି ଅନୁଭବ କଲି ।

ମୁଁ ତାଙ୍କୁ କହିଲି, ଗଭୀର କୂପଟିଏ ପାଇଁ ଟ୨୫୦୦/- ଖର୍ଚ୍ଚ ହେବ ଓ ଅଗଭୀର କୂପ ପାଇଁ ଟ୧୫୦୦/- ଖର୍ଚ୍ଚ ହେବ । ସେ ସମୟ ପାଇଁ ଏହା ଖୁବ୍ ବଡ଼ ପରିମାଣ ଥିଲା । ଚନ୍ଦରୀ ନାନୀ ମନେ ମନେ କଣ ହିସାବ କଲେ । ମତେ ତା' ପରଦିନ ତାଙ୍କ ଘରକୁ ଆସିବାକୁ କହିଲେ ।

ତା' ପରଦିନ ମୁଁ ତାଙ୍କ ଘରକୁ ଗଲି, ସେ ମୋତେ ଭିତରକୁ ଡାକି ନେଲେ ଓ ଖଟ ତଳୁ ଗୋଟିଏ ବାକ୍ସ ବାହାର କରି ଖଟ ଉପରେ ତାକୁ ଢାଳିଦେଲେ । ମୁଁ ଚକିତ ହୋଇ ଭିକ୍ଟୋରିୟା ଅମଳର ଟଙ୍କା, ଏଡୱାର୍ଡ,



ପଂଚମଜର୍ଜ ଓ ଅନ୍ୟାନ୍ୟ ବହୁତ ମୁଦ୍ରା; ରୂପା ଅଳଙ୍କାର ଓ ଗୋଟିଏ ସୁନା କଣ୍ଠେଇ ଦେଖିବାକୁ ଲାଗିଲି । ତାଙ୍କର ସାଧାରଣ ଜୀବନ ପ୍ରଣାଳୀ ଓ କଷ୍ଟଲବ୍ଧ ଆୟ ମୋ ଆଖି ଆଗରେ ନାଚିଗଲା । ତାଙ୍କ ଜୀବନବ୍ୟାପୀ

ସରଳ ଜୀବନ ଯାପନର ମର୍ମ ଥିଲା କୂଅଟିଏ ଖୋଳାଇବା– ଯାହାର ଜଳ ସମଗ୍ର ସମାଜର ଉପକାରରେ ଆସିବ। ମୁଁ ସବୁ ହିସାବ କରି ଦେଖିଲି ଯେ ଏହା ଗୋଟିଏ ଗଭୀର କୂପ ଖୋଳାଇବା ପାଇଁ ଯଥେଷ୍ଟ ହେବ। ଚନ୍ଦରୀ ନାନୀ କହିଲେ ଯେ ଯଦି ଏହା ଯଥେଷ୍ଟ ନ ହୁଏ, ତେବେ ସେ କୂଅ ଖୋଳା ବେଳେ ନିଜେ ଶ୍ରମଦାନ କରିବେ।

ତାଙ୍କ ସହିତ କଥାବାର୍ତ୍ତା କରି ମୁଁ ଏତେ ମୁଗ୍ଧ ହୋଇଗଲି ଯେ ମୁଁ ନିଜେ ସେଥିପାଇଁ କିଛି ଦାନ କରିବାକୁ ଚାହିଁଲି। ଯେହେତୁ ତାଙ୍କ ସ୍ୱାମୀଙ୍କ ସ୍ମୃତିରେ ସେ କୂଅ ଖୋଳା ଯାଉଛି, ସେଥିପାଇଁ ଅନ୍ୟ କାହାର ଦାନ ଗ୍ରହଣ କରିବାକୁ ସେ ରାଜି ହେଲେ ନାହିଁ। ମୁଁ ପୁଣି ପଚାରିଲି, କୂଅରେ କାହା ନାଁରେ ଫଳକ ଲଗାଯିବ। ସେ କହିଲେ, ଯଶକୀର୍ତ୍ତିର ଉଦ୍ଦେଶ୍ୟ ରହିଲେ ସବୁ ଜିନିଷ ଅଲଗା ହୋଇଯିବ। ନାଁରେ କଣ ଅଛି? ଜୀବନ କ୍ଷଣଭଙ୍ଗୁର, ଏପରି କିଛି କର ନାହିଁ।

ମୋତେ ଏହି ଅଶିକ୍ଷିତା ବୃଦ୍ଧାଙ୍କର ଯୁକ୍ତି ଆଶ୍ଚର୍ଯ୍ୟଚକିତ କଲା ଓ ତାଙ୍କ ପ୍ରତି ଶ୍ରଦ୍ଧା ବଢ଼ିଗଲା। ଆଜିକାଲି ତ ଲୋକମାନଙ୍କର ମାନସିକତା ଏପରି ସ୍ତରକୁ ଆସିଯାଇଛି ଯେ ଗୋଟିଏ ବଡ଼ ସଂସ୍ଥା ଗଠନ କଲାବେଳେ ସେମାନେ ସାମାନ୍ୟ ଦାନ କରି ନିଜ ନିଜର ନାଁ ଲେଖାଇବାକୁ ବ୍ୟସ୍ତ। ପୁଣି ତା'ର ଉଦ୍‌ଘାଟନ ସମାରୋହରେ ବଡ଼ ବଡ଼ ନେତା ପ୍ରଭୃତିଙ୍କୁ ବିଶିଷ୍ଟ ଅତିଥିରୂପେ ନିମନ୍ତ୍ରଣ କରି ଯଶ ଅର୍ଜନ କରିବାର ଲକ୍ଷ୍ୟ ମଧ୍ୟ ଥାଏ। ଏ ମହିଳା ନିଜ ଜୀବନର ସମସ୍ତ ସଂଚୟ ଦାନ କରୁଛନ୍ତି, ଅଥଚ ନିଜର କିଂବା ସ୍ୱାମୀଙ୍କର ନାମ ପ୍ରକାଶ କରିବାକୁ ଇଚ୍ଛୁକ ନୁହନ୍ତି। ମୁଁ ଭାବୁଥିଲି, ପ୍ରକୃତ ଦାନୀ କିଏ?

କୂଅ ଖୋଳା କାମ ଆରମ୍ଭ ହେଲା। ମୁଁ ଯାଇ ଦେଖିଲି, ଚନ୍ଦରୀ ନାନୀ ଶ୍ରମିକମାନଙ୍କ ସଂଗରେ କାମ କରୁଥିଲେ। ତାଙ୍କର ନିଷ୍ଠା ଓ ପରିଶ୍ରମ ଦେଖି ଅନ୍ୟ ଶ୍ରମିକମାନେ ଉତ୍ସାହିତ ହୋଇ କାମ କରୁଥିଲେ। ଜଣେ କହିଲେ, "ନାନୀ, ତୁମ କୂଅର ପାଣି ତ ବହୁତ ମିଠା ବାହାରିଲା। ହେଲେ ତୁମେ ତ ଏହାକୁ ବହୁତ ଦିନ ପିଇ ପାରିବ ନାହିଁ।" ସେ କହିଲେ, "ସେଥିରେ କଣ ଅଛି? ମୁଁ ମୋ ଜୀବନ ସାରା ଅନ୍ୟଲୋକଙ୍କ କୂଅର ପାଣି ପିଇଛି। ବର୍ତ୍ତମାନ ସମାଜକୁ ଋଣ ଶୁଝିବାର ପାଳି ପଡ଼ିଛି। ମୋର ଶେଷ ଇଚ୍ଛା ଯେ

ମୋ ପ୍ରାଣ ଯିବାବେଳେ ଗଂଗାଜଳ ବଦଳରେ ଏଇ କୂଅର ପାଣି ମୋ ପାଟିରେ ଦେବ।"

କୂଅ ତିଆରି ଶେଷ ହେଲା। ଚନ୍ଦରୀ ନାନୀ ପରିଶ୍ରମ କରି କରି ବେମାର ହୋଇ ପଡ଼ିଥିଲେ। ଯେଉଁଦିନ ସେଠି ହନୁମାନ ପୂଜା ଓ ପ୍ରସାଦ ବିତରଣ ହେଲା, ସେ ପ୍ରାୟ ଅର୍ଦ୍ଧଚୈତନ୍ୟ ଅବସ୍ଥାରେ ଥିଲେ। ଲୋକମାନେ ତାଙ୍କ ଗ୍ୱରିପାଖେ ଭଜନ କୀର୍ତ୍ତନ କରୁଥାନ୍ତି। ସେଇ ଭଜନ ଶୁଣି ଶୁଣି ତାଙ୍କର ଦେହାନ୍ତ ହୋଇଗଲା। ତାଙ୍କର ଶେଷ ଇଚ୍ଛା ହିସାବରେ ସେଇ କୂଅର ପାଣି ତାଙ୍କ ପାଇଁ ଗଂଗାଜଳ ହେଲା।

ଆଜି ସେ ଗାଁ ବଡ଼ ଗାଁ ହୋଇଛି। ଆହୁରି ଅନେକ କୂଅ ଖୋଳା ହୋଇଛି। କିନ୍ତୁ ଚନ୍ଦରୀ ନାନୀଙ୍କ କୂଅର ପାଣି ସବୁଠାରୁ ମିଠା।



# ମୋତି କକା

ଆମ ଗ୍ରାମକୁ ପ୍ରାୟତଃ ଅନେକ ସାଧୁ-ମହାତ୍ମା ଆସନ୍ତି ଏବଂ ସନ୍ଧ୍ୟାରେ ଏକସ୍ଥାନରେ ଗ୍ରାମବାସୀମାନେ ଏକତ୍ରିତ ହୋଇ ଗ୍ରାମର ଏକ ସର୍ବସାଧାରଣ ଚଉପାଢ଼ୀରେ ସେମାନଙ୍କ ଠାରୁ ଆଧ୍ୟାତ୍ମିକ ପ୍ରବଚନ ଶୁଣିଥାଆନ୍ତି । ପ୍ରବଚନ ଚାଲିଥିବା ସମୟରେ ଦେଖାଯାଏ ଯେ ଜଣେ ବୃଦ୍ଧ ବ୍ୟକ୍ତି ଚଉପାଢ଼ୀର ବାହାରେ ଯେଉଁଠାରେ ଲୋକମାନେ ଜୋତା ରଖିଥାନ୍ତି—ସେଠାରେ ବସିରହି ହାତରେ ମାଳି ଧରି ଜପ କରୁଥାଆନ୍ତି । ବୃଦ୍ଧାବସ୍ଥାରେ ଶରୀର କ୍ଷୁଣ୍ଣ ହୋଇଥିଲେ ମଧ୍ୟ ଜଣାଯାଉଥିଲା, ସେ ତାଙ୍କର ଯୁବାବସ୍ଥାରେ ସୁନ୍ଦର ଏବଂ ବେଶ୍ ବଳବାନ ହୋଇଥିବେ । ତାଙ୍କର ଚକ୍ଷୁର ତେଜ କିନ୍ତୁ ଉଜ୍ଜ୍ୱଳ ଥିଲା ।

ଉକ୍ତ ବୃଦ୍ଧବ୍ୟକ୍ତିଙ୍କର ଛୋଟପିଲାଙ୍କ ଠାରେ ଅତ୍ୟନ୍ତ ସ୍ନେହଶ୍ରଦ୍ଧା ଥିବାରୁ ଗ୍ରାମର ପିଲାମାନେ ପ୍ରାୟ ତାଙ୍କ ପାଖରେ ମେଳା ଜମାଇ ଥାଆନ୍ତି । ପିଲାମାନେ ବୁଢ଼ାଙ୍କ କାନ୍ଧ ଉପରେ ବସି ନାଚିକୁଦି ଆମୋଦିତ ହୋଇଥାଆନ୍ତି । ବୃଦ୍ଧବ୍ୟକ୍ତିଙ୍କର ଚଳଣି ଭଲ ଥିଲା । ଦୁଇଜଣ ଭେଣ୍ଡିଆ ପୁଅଙ୍କର ସୈନ୍ୟ-ବିଭାଗରେ ଚାକିରୀ । ଘରେ ବେଶ୍ ନାତି-ନାତୁଣୀ ଜମିବାଡ଼ି ମଧ୍ୟ ଥିଲା ।

ଲୋକମାନେ କହନ୍ତି ମୋତି କକା ଜଣେ ନାମଜାଦା ଡାକୁ ଥିଲେ । ହେଲେ ମଧ୍ୟ ତାଙ୍କର ନାମ ଲୋକ ସମୂହରେ ଭଲ ଥିଲା । ସେ ଡକାଏତ ଥିବା ସମୟରେ କେବେହେଲେ ବ୍ରାହ୍ମଣମାନଙ୍କର କ୍ଷତି କରିନଥିଲେ, ବରଂ ସେ ବ୍ରାହ୍ମଣମାନଙ୍କର ଝିଅ ବିଭାଘରରେ ବହୁତ ସାହାଯ୍ୟ କରୁଥିଲେ । ସ୍ତ୍ରୀଲୋକମାନଙ୍କର ଇଜ୍ଜତ ପ୍ରତି ସତର୍କ ଥିଲେ ।

ଆମେ ଯେତେବେଳେ ପିଲା ହୋଇଥିଲୁ ତାଙ୍କ ସହିତ ଖେଳକୁଦରେ ମଜ୍ଜିରହି ତାମସା କରୁଥିଲୁ । ଆମମାନଙ୍କର ଡକାଏତ କଣ ସେ ଜ୍ଞାନ ନଥିଲା, ମାତ୍ର ଆମେ ଜାଣିଥିଲୁ ଡାକୁମାନେ ଅତି ଖରାପ ଲୋକ । ମୋତି କକାଙ୍କୁ ଏ ବିଷୟରେ ପଚାରିଲେ ସେ କଥାକୁ ବାଁରେଇ ଦେଇଥାନ୍ତି । ବେଳେ ବେଳେ ଆଖି ମଟ ମଟ କରି ଆମକୁ ଡରାନ୍ତି ।

ମୁଁ ବଡ଼ ହୋଇ ପାଠ ପଢ଼ି ବାହାରେ ଅନେକ ଦିନ ରହି ଗ୍ରାମକୁ ଲେଉଟିଲା ପରେ ମୋତି କକାଙ୍କୁ ଦେଖିବାକୁ ଗଲି । ମୋତି କକାଙ୍କୁ ସେତେବେଳେ ୭୫/୮୦ ବର୍ଷ ହେବ । ସେ ଆଉ ବେଶୀ ଚାଲବୁଲ କରି

ପାରୁ ନଥିଲେ । ତାଙ୍କର ହାତ ମଧ୍ୟ ଥରୁଥିଲା, ମାତ୍ର ଦୃଷ୍ଟି ଓ ଶ୍ରବଣ ଶକ୍ତି ଭଲ ଥିଲା ।

ପିଲାଦିନେ ସମସ୍ତଙ୍କ ଅପେକ୍ଷା ମୋତି କକା ମୋତେ ବେଶୀ ଭଲ ପାଉଥିଲେ । ମୁଁ ତାଙ୍କଠାରୁ କାହାଣୀ ଶୁଣୁଥିଲି । ମୁଁ ତାଙ୍କୁ କହିଥିଲି ମୁଁ ବଡ଼ ହୋଇ ଚାକିରୀ କଲେ ତମକୁ ବଢ଼ିଆ ଶାଲ୍ ଆଣିଦେବି । ଏକଥା ମୋର ମନରେ ଥିଲା ଏବଂ ମୁଁ ତାଙ୍କ ପାଇଁ ଆଣିଥିବା ଶାଲ୍ ତାଙ୍କ କାନ୍ଧରେ ରଖିଦେଲି । ମୋତି କକା ଆନନ୍ଦରେ ଏପରି ତନ୍ମୟ ହୋଇଗଲେ ଯେ ତାଙ୍କର ଆଖିରୁ ଆନନ୍ଦାଶ୍ରୁ ବହିଗଲା । ସେ କହିଲେ, ମୁଁ ଶୁଣିଛି ତୁ ମାସକୁ ଦଶହଜାର ଟଙ୍କାରେ ଚାକିରୀ କରିଛୁ । ତୋପାଇଁ ମୁଁ ସର୍ବଦା ପ୍ରଭୁଙ୍କ ଠାରେ ପ୍ରାର୍ଥନା କରେ । ଯା ହେଉ ପ୍ରଭୁ ଶ୍ରୀରାମ ମୋର ପ୍ରାର୍ଥନା ଶୁଣିଲେ ।

ଏହି ସମୟରେ ମୋତି କକାଙ୍କର ମହାତ୍ମାଗାନ୍ଧୀଙ୍କୁ ଦର୍ଶନ କରିବାରେ ପ୍ରବଳ ଆକାଂକ୍ଷା ଥିଲା । ଆମର ରାଜସ୍ଥାନରେ ଗ୍ରାମମାନଙ୍କରେ ମହାତ୍ମାଗାନ୍ଧୀଙ୍କ ବିଷୟରେ ଅନେକ କିମ୍ବଦନ୍ତୀ ଥିଲା । ଲୋକମାନେ ମହାତ୍ମାଗାନ୍ଧୀଙ୍କୁ ସାକ୍ଷାତ୍ ଭଗବାନଙ୍କ ଦର୍ଶନ ହୋଇଥିଲା ବୋଲି କହୁଥିଲେ । ଲୋକମାନଙ୍କର ଧାରଣା ଥିଲା, ଯିଏ ଯେତେ ପାପ କରିଥାଉ ପଛେ ଗାନ୍ଧୀଜୀଙ୍କ ସାମନାରେ ସେମାନେ ତାଙ୍କର ପାପକର୍ମ ପ୍ରକାଶ କଲେ ପାପରୁ ମୁକ୍ତ ହୋଇଯିବେ ।

ମୋତି କକା ଦିନକୁ ଦିନ ଦୁର୍ବଳ ହେବାକୁ ଲାଗିଲେ ଏବଂ ତାଙ୍କର ଗାନ୍ଧୀଜୀଙ୍କୁ ସାକ୍ଷାତ୍ କରିବାର ଆଶା ମଉଳିବାକୁ ଲାଗିଲା । ଘଟଣା ଚକ୍ରରେ ଥରେ ହରିଦ୍ୱାରରୁ ଜଣେ ମହାନ୍ ସାଧୁ ତାଙ୍କର ଅନେକ ଶିଷ୍ୟଙ୍କ ସହିତ ଗ୍ରାମକୁ ଆସିଲେ । ମୋତି କକା ଏ ଖବର ପାଇ ସାଧୁ-ମହାତ୍ମା, ତାଙ୍କର ଶିଷ୍ୟବୃନ୍ଦ ଏବଂ ଗ୍ରାମର ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କୁ ଭୋଜନରେ ଆପ୍ୟାୟିତ କରିବାକୁ ନିମନ୍ତ୍ରଣ କଲେ । ଖାଦ୍ୟ ପରଷା ହେବା ପୂର୍ବରୁ ମୋତି କକା ସାଧୁମହାତ୍ମା ତଥା ସର୍ବଲୋକଙ୍କ ସମ୍ମୁଖରେ ଛିଡ଼ା ହୋଇ ହାତ ଯୋଡ଼ି କହିବାକୁ ଲାଗିଲେ ଯେ "ମୋର ଶେଷସମୟ ଆସିଗଲାଣି– ମୁଁ ଜୀବନରେ ବହୁତ ଜଘନ୍ୟ ଅପରାଧ କରିଛି । ମୋତେ ଗତକାଲି ରାତିରେ ସ୍ୱପ୍ନ ହେଲା ଯେ–ଗ୍ରାମକୁ ଜଣେ ମହାନ୍ ସାଧୁ ଆସୁଛନ୍ତି, ତାଙ୍କ ସହିତ ଗ୍ରାମବାସୀମାନଙ୍କ ସମ୍ମୁଖରେ ସମସ୍ତ ପାପକର୍ମ ସ୍ୱୀକାର କର । ସେଥିରେ ତୁ ପରମ ଶାନ୍ତି ପ୍ରାପ୍ତ

ହେବୁ । ତେଣୁ ମୁଁ ମହାତ୍ମାଙ୍କ ସହିତ ଆପଣମାନଙ୍କୁ ନିମନ୍ତ୍ରଣ କରିଛି ଏବଂ ଆପଣମାନଙ୍କ ସାମ୍ନାରେ ମୋର ପାପ କର୍ମ ବଖାଣିବି ।

ମୋତି କକାଙ୍କର ଜୀବନର ଗାଥା ଶୁଣି ଉପସ୍ଥିତ ସାଧୁ ଏବଂ ବ୍ୟକ୍ତିବିଶେଷ ସ୍ତବ୍ଧ ହୋଇ କିଛି ସମୟ ରହିଗଲେ ଏବଂ ସେମାନେ ମୋତି କକାଙ୍କୁ ପୁଣ୍ୟାତ୍ମା ଅଥବା ପାପାତ୍ମା କେଉଁ ହିସାବରେ ଗଣିବେ ଜାଣି ପାରି ନଥିଲେ ।

ମୋତି କକାଙ୍କର ବକ୍ତବ୍ୟ–

ମୁଁ ମୋର ବାପା-ମାଙ୍କର ଏକମାତ୍ର ସନ୍ତାନ ଥିଲି । ବିଭା ହୋଇ ଘରକୁ ଫେରିବାର ଦିନେ ଦୁଇଦିନ ଭିତରେ ମହାଜନ ପୋଲିସମାନଙ୍କ ସହିତ ପହଞ୍ଚିଗଲେ । ମୋ ବାପା ତାଙ୍କ ଠାରୁ କରଜ ଟଙ୍କା ନେଇ ଫେରସ୍ତ କରି ନଥିବାରୁ ପୋଲିସ୍ ବାପାଙ୍କୁ ହାତକଡ଼ି ଦେଇ ଥାନାକୁ ନେଇଗଲେ । ସମସ୍ତ ବନ୍ଧୁବାନ୍ଧବ ଏବଂ ମୋର ନବ ବିବାହିତା ପତ୍ନୀ ସମ୍ମୁଖରେ ବାପାଙ୍କର ହାତକଡ଼ି ପଡ଼ିବା ଏବଂ ଜେଲ ଯିବାଟା ମୋତେ ବହୁତ ବାଧିଲା ଏବଂ ଘରୁ ବାହାରିବାକୁ ଅତ୍ୟନ୍ତ ଲଜ୍ଜା ହେଲା । ମୁଁ ପ୍ରତିଜ୍ଞା କଲି, ଯେନତେନ ପ୍ରକାରେ ମୁଁ ପିତାଙ୍କର ଋଣ ପରିଶୋଧ କରି ତାଙ୍କୁ ଜେଲଖାନାରୁ ମୁକୁଳାଇବି; କିନ୍ତୁ ମୋର ଆପ୍ରାଣ ଚେଷ୍ଟା ସତ୍ତ୍ୱେ ମୋତେ କୌଣସି କାମ ମିଳିଲା ନାହିଁ । ସଂଯୋଗବଶତଃ ମୋର ରାମସିଂ ନାମକ ଏକ ଡାକୁର ସାଥୀମାନଙ୍କ ସହିତ ଭେଟ ଓ ପରିଚୟ ହୋଇଗଲା । ମୁଁ ରାମସିଂ ଦଳରେ ସାମିଲ୍ ହୋଇଗଲି ଏବଂ ମୋର ସାହସ ଏବଂ ଅପରିସୀମ ଶାରୀରିକ ବଳ ହେତୁ ରାମସିଂର ମୃତ୍ୟୁ ପରେ ମୁଁ ଦଳର ନେତା ହୋଇଗଲି ।

ପିତୃଋଣ ଶୁଝିବା ପାଇଁ ଦିନେ ରାତିରେ କରଜ କରିଥିବା ଅର୍ଥର ଦୁଇଗୁଣ ଟଙ୍କା ଧରି ମହାଜନ ଘରକୁ ଗଲି ଏବଂ ଟଙ୍କା ଶୁଝିଦେଇ ତା'ଠାରୁ ରସିଦ ଆଣି ଫେରିବା ସମୟରେ ମହାଜନର ନାକ-କାନ ମଧ୍ୟ କାଟିଦେଲି । ଏହାପରେ ବହୁସଂଖ୍ୟାରେ ଡକେଇତି କରିଗ୍ଲିଲି । ଡକେଇତି କଲେ ମଧ୍ୟ ଭଲ ଲୋକଙ୍କୁ, ବ୍ରାହ୍ମଣମାନଙ୍କୁ, ଗ୍ରାମର ବୋହୂ-ଭୁଆସୁଣୀ ତଥା ସ୍ତ୍ରୀଲୋକଙ୍କର କୌଣସି କ୍ଷତି କରୁ ନଥିଲି । ଗରିବ-ଗୁରୁବାମାନଙ୍କୁ ସାହାଯ୍ୟ କରୁଥିଲି ଏବଂ କୌଣସି ଗରିବ ଝିଅ ବିଭାଘରରେ ଅର୍ଥଦାନ କରୁଥିଲି ।



ମୋତେ ପ୍ରାୟ ଖବର ମିଳୁଥିଲା କି ପୋଲିସ ମୋର ମା-ବାପାଙ୍କ ଉପରେ ବାରମ୍ବାର ଥାନାରେ ଅତ୍ୟାଗ୍ରର କରୁଛନ୍ତି ଏବଂ ପୁଣି ଶୁଣିଲି ଯେ ମୋର ସ୍ତ୍ରୀକୁ ମଧ୍ୟ ଧରି ନେଇ ତା' ପ୍ରତି ଅମାନୁଷିକ ବ୍ୟବହାର କରୁଛନ୍ତି। ଦିନେ ରାତିରେ ମୁଁ ମୋର ୧୦/୧୨ ଜଣ ସାଙ୍ଗଙ୍କୁ ଧରି ଥାନା ଉପରେ ଚଢ଼ାଉ କଲି। ସେଇ ଆକ୍ରମଣରେ ଥାନାର ଆଠ-ଦଶ ଜଣ ସିପାହୀଙ୍କ ସମେତ ଥାନାବାବୁଙ୍କ ମୃତ୍ୟୁ ଘଟିଲା। ଆମ ପକ୍ଷରୁ ମଧ୍ୟ ୩-୪ ଜଣ ମଲେ। ଥାନାରେ ମୋର ବାପା-ମାଆ ଓ ସ୍ତ୍ରୀଙ୍କର ଆକୁଳ କ୍ରନ୍ଦନ ଦେଖି ଅତ୍ୟନ୍ତ ମର୍ମାହତ ହୋଇପଡ଼ିଲି। ମାତ୍ର ସେମାନଙ୍କୁ ଉଦ୍ଧାର କରିବା ପୂର୍ବରୁ ଅନେକ ସଂଖ୍ୟକ ପୁଲିସ୍ ଆସିବାରୁ ଆମେ ଘୋର ଜଙ୍ଗଲକୁ ପଳାଇଲୁ। ଏହା ପରେ ମୋତେ ଜୀବନ୍ତ ବା ମୃତ ଅବସ୍ଥାରେ ଯିଏ ଧରାଇ ଦେବ, ତାକୁ ପୋଲିସ୍ ଦଶହଜାର ଟଙ୍କା ପୁରସ୍କାର ଦେବାକୁ ଘୋଷଣା କଲେ।

ଏହି ସମୟରେ ଶୁଣିଲି ଯେ ଗ୍ରାମରେ ଜଣେ ବ୍ରାହ୍ମଣର ଝିଅ ଦଶହଜାର ଟଙ୍କା ପାଇଁ ବିଭା ହୋଇ ପାରୁ ନାହିଁ। ତେଣୁ ମୁଁ ରାତିରେ ଏକୁଟିଆ ଉକ୍ତ ବ୍ରାହ୍ମଣଘରକୁ ଗଲି ଏବଂ ତାକୁ କହିଲି, ତୁମେ ମୋତେ ପୁଲିସରେ ଧରେଇ ଦିଅ; ଦଶହଜାର ଟଙ୍କା ପାଇବ। ସେ ପ୍ରଥମରେ ନାହିଁ-ନାହିଁ କଲେ, ମାତ୍ର

ମୁଁ ତାଙ୍କର ଗୋଡ଼ହାତ ଧରି ଅନୁନୟ ବିନୟ ହେବାରୁ ସେ ରାଜି ହେଲେ। ତାଙ୍କର ଝିଅ ବିଭାଘର ହୋଇଗଲା ଏବଂ ମୋତେ ପନ୍ଦରବର୍ଷ ଜେଲଦଣ୍ଡ ହେଲା। କିନ୍ତୁ ମୋର ଆଗ୍ରହ ବ୍ୟବହାରରେ ସନ୍ତୁଷ୍ଟ ହୋଇ ମୋର ପନ୍ଦର ବର୍ଷର ଦଣ୍ଡକୁ କମ୍ କରି ଦଶ ବର୍ଷରେ ଛାଡ଼ିଦେଲେ।

ଏହା ମଧ୍ୟରେ ପ୍ରାୟ ତିରିଶ ବର୍ଷ ଗଡ଼ିଗଲାଣି। ମାତ୍ର ମୋର ପୂର୍ବ ଅପରାଧ ଏବଂ ଜଘନ୍ୟ ପାପ କର୍ମ ପାଇଁ ମୁଁ ସର୍ବଦା ଘୋର ଅନୁତାପରେ ରହିଥିଲି। ମୁଁ ଶୁଣିଥିଲି–ନିଜର ପାପକର୍ମ ଭକ୍ତମାନଙ୍କ ସେବାରେ କଟିଯାଏ ଏବଂ ପାପକର୍ମ ସର୍ବସମ୍ମୁଖରେ ଅନୁତପ୍ତ ହୋଇ ପ୍ରକାଶ କଲେ ମଧ୍ୟ ସେଥିରୁ ନିସ୍ତାର ମିଳେ। ସେଥିନିମିତ୍ତ ଆଜି ଆପଣମାନଙ୍କ ସମ୍ମୁଖରେ ସେ ସମସ୍ତ ପ୍ରକାଶ କରିବାରୁ ମୋତେ ପରମ ଶାନ୍ତି ମିଳିଲା।

ମୋତି କକାଙ୍କର ଏକଥାଗୁଡ଼ିକ ଶୁଣି ସମସ୍ତେ ସ୍ତବ୍ଧ ହୋଇଗଲେ ଏବଂ ତାଙ୍କୁ ଧନ୍ୟ ଧନ୍ୟ କହିବାକୁ ଲାଗିଲେ। ସାଧୁମହାତ୍ମା ଉଠିପଡ଼ି ମୋତି କକାଙ୍କୁ କୁଣ୍ଢାଇ ଧରି ଆନନ୍ଦାଶ୍ରୁ ବର୍ଷଣ କଲେ।



# ପରୋପକାର

ବହୁବର୍ଷ ପୂର୍ବେ ରାଜସ୍ଥାନରେ ବଡ଼ ବଡ଼ ସହର ବ୍ୟତୀତ ଅନ୍ୟତ୍ର ଡାକ୍ତର ନଥିଲେ; ମାତ୍ର ଯଦି କୌଣସି ଧନାଢ୍ୟ ବ୍ୟକ୍ତି ବେମାର ପଡୁଥିଲେ, ସେମାନଙ୍କ ପାଇଁ ଯୋଧପୁର କିମ୍ବା ବିକାନେର୍‌ରୁ ଡାକ୍ତର ଡକା ଯାଉଥିଲା । ଆମ ଅଞ୍ଚଳରେ ଜଣେ ଶେଠଙ୍କ ନିମିତ୍ତ କଲିକତାରୁ ଜଣେ ଡାକ୍ତରଙ୍କୁ ଡକାଯାଇଥିଲା । ଏହି ଡାକ୍ତରଙ୍କୁ ଦେଖିବା ପାଇଁ ସ୍ଥାନୀୟ ଲୋକଙ୍କ ବ୍ୟତୀତ ଆଖପାଖ ଅଞ୍ଚଳରୁ ମଧ୍ୟ ଅନେକ ଲୋକ ଆସିଥିଲେ; କାରଣ ସେ ସମୟରେ ସେ ଡାକ୍ତରଙ୍କର ଦୈନିକ ଫିସ୍ ଥିଲା ଶହେ ଟଙ୍କା, ଯାହାକି ଆଶ୍ଚର୍ଯ୍ୟର କଥା ଥିଲା ।

ସେ ସମୟରେ ବେମାରୀ ତ ଥିଲା, ମାତ୍ର ଡାକ୍ତର ଦେଖାଇବା ପ୍ରଚଳନ ସେମିତି ନଥିଲା । ସର୍ଦ୍ଦି, ଜ୍ୱର, ମୁଣ୍ଡବ୍ୟଥା, ମେଲେରିଆ ଆଦି ରୋଗରେ ଟୁଟୁକା ଔଷଧ ଲୋକଙ୍କୁ ଦିଆଯାଉଥିଲା । ଅଧିକାଂଶ ରୋଗ ଦେଶୀ ଜଡ଼ିବୁଟିରେ ଭଲ ହେଉଥିଲା ।

ବୈଦ୍ୟ ବା କବିରାଜଙ୍କ ବ୍ୟତୀତ ଅନେକ ପୁରୁଣାକାଳିଆ ସ୍ତ୍ରୀଲୋକମାନେ ତାଙ୍କର କୋଥଳୀରେ ବିଭିନ୍ନ ରକମର ଟୁଟୁକା ଔଷଧ ରଖୁଥିଲେ ଏବଂ ବଡ଼ ମଣିଷ ତଥା ପିଲାମାନଙ୍କୁ ଦେଉଥିଲେ । ବେମାରୀ ହେଲେ ସେମାନଙ୍କୁ ଡାକିବାକୁ ପଡୁ ନଥିଲା । ଖବର ମିଳିଲା ମାତ୍ରେ ସେମାନେ ନିଜେ ଆସି ଯାଉଥିଲେ ଏବଂ ରୋଗୀମାନଙ୍କର ସେବାରେ ତତ୍ପର ଥିଲେ । କୌଣସି ପ୍ରକାରର ଫିସ୍ ବା ଔଷଧର ମୂଲ୍ୟ ଦେବାକୁ ପଡୁ ନଥିଲା, କୌଣସି ଶତ୍ରୁତା ଥିଲେ ଏହି ଅବସରରେ ତାର ସମାଧାନ ମଧ୍ୟ ହୋଇ ଯାଉଥିଲା ।

ଅନେକ ବର୍ଷ ପରେ ପ୍ରାୟ ୧୯୩୦ ମସିହା ବେଳକୁ ଡାକ୍ତରମାନଙ୍କୁ ଦେଖିବାକୁ ମିଳିଲା । ଦେଖାଗଲା ଏହି ଡାକ୍ତରଙ୍କ ବେକରେ ରବରର ଷ୍ଟେଥିସ୍କୋପ ଝୁଲିରହିଛି । ସେତେବେଳେ ଡାକ୍ତରଙ୍କ ଫିସ୍ ଥିଲା ଅତି ଜୋରରେ ଦୁଇଟଙ୍କା । ଏହା ସତ୍ତ୍ୱେ ଲୋକଙ୍କର ଆର୍ଥିକ ଅବସ୍ଥା ଭଲ ନ ଥିବାରୁ ସେମାନେ ଝଡ଼ାଫୁଙ୍କା ଓ ଟୁଟୁକା ଔଷଧ ଉପରେ ନିର୍ଭର କରୁଥିଲେ ।

ସେତେବେଳେ କବିରାଜର ପୁଅ କବିରାଜି କରୁଥିଲେ । ଆୟୁର୍ବେଦ

ସ୍କୁଲ-କଲେଜ ନ ଥିଲେ ମଧ୍ୟ କବିରାଜର ପୁତ୍ର ତାଙ୍କର ପିତାଙ୍କ ଠାରୁ ଶିଖି ବେମାରୀ ସମ୍ବନ୍ଧରେ ଯଥେଷ୍ଟ ଜ୍ଞାନର ଅଧିକାରୀ ଥିଲେ। ଏବେକାର ଯୁଗରେ ଯେପରି ମଳମୂତ୍ର, ରକ୍ତ ଆଦି ପରୀକ୍ଷା କରାଯାଉଛି, ସେତେବେଳେ ସେମିତି ନଥିଲା। ମାତ୍ର କବିରାଜ ନାଡ଼ୀ ଦେଖି ସବୁ ଜାଣି ପାରୁଥିଲେ।

ସମ୍ଭବତଃ ୧୯୩୬ ମସିହା ହେବ–ଆମ ଅଞ୍ଚଳରେ ବଡ଼ ଧରଣର ହଇଜା ବ୍ୟାପିଗଲା। ପ୍ରତିଦିନ ୨୦/୩୦ ଜଣ ମୃତ୍ୟୁମୁଖରେ ପତିତ ହେଲେ। ଯେଉଁମାନେ ସ୍ୱଚ୍ଛଳ ଥିଲେ, ସେମାନେ ଗାଁ ଛାଡ଼ି ଦୂରଦୂରାନ୍ତକୁ ତାଙ୍କର ବନ୍ଧୁବାନ୍ଧବଙ୍କ ନିକଟକୁ ଚ୍ଵଲିଗଲେ; କେବଳ ଗରିବଗୁରବା ପଡ଼ିରହିଲେ। ଏପରି ହେଲା ଯେ କୌଣସି ବ୍ୟକ୍ତି ରୋଗରେ ଆକ୍ରାନ୍ତ ହେଲେ ତା'ର ଘରଲୋକ ବି ରୋଗୀକୁ ଛାଡ଼ି ପଳାଇଲେ।

ଘରେ ଘରେ ରୋଗୀ। କେବଳ ଜଣେ କବିରାଜ ଗ୍ରାମରେ ରହିଥିଲେ; ସେ ଥିଲେ ବ୍ରଜମୋହନ ଗୋସ୍ୱାମୀ। ଯଦିଓ ତାଙ୍କର ପରିବାର ବର୍ଗ ଏବଂ ଚିହ୍ନାଜଣା ଲୋକ ତାଙ୍କୁ କହିଲେ, ତମେ କେତେ ଲୋକଙ୍କର ସେବା କରିପାରିବ? ତେଣୁ ତୁମେ ଗ୍ରାମ ଛାଡ଼ି ଚ୍ଵଲିଯାଅ। ଏହାର ଉତ୍ତରରେ ସେ କହିଲେ, ଆମ ଘରର ପରମ୍ପରା ସେପରି ନୁହଁ। ମୋର ବାପ, ଗୋସବାପା ମଧ୍ୟ ବୈଦ୍ୟ ଥିଲେ। ସେମାନେ କେବେ ରୋଗୀମାନଙ୍କୁ ଉପେକ୍ଷା କରି ନଥିଲେ। ସେମାନେ ଗରିବ ରୋଗୀମାନଙ୍କୁ ନିଜ ଖର୍ଚ୍ଚରେ ପଥ୍ୟ ଦେଉଥିଲେ ଏବଂ ଔଷଧ ଦେଉଥିଲେ। ଏଣୁ ଏପରି ବିପତ୍ତିରେ ମୁଁ ଅସହାୟ ରୋଗୀମାନଙ୍କୁ କିପରି ଛାଡ଼ି ଚ୍ଵଲିଯିବି? କର୍ତ୍ତବ୍ୟ ବିମୁଖ ହୋଇ ପାପର ବୋଝ କିପରି ମୁଣ୍ଡାଇବି?

ହଇଜାର ଭୟଙ୍କର ପ୍ରକୋପ ଥିଲା ଚମାର ତଥା ନୀଚଜାତି ବସ୍ତିରେ। ସେ ସବୁ ବସ୍ତିରେ ଏତେ ଲୋକ ମରୁଥିଲେ ଯେ ସେ ସ୍ଥାନ ଶ୍ମଶାନ ସଦୃଶ ଦେଖାଯାଉଥିଲା। ଦୁର୍ଗନ୍ଧ ମଧ୍ୟ ଆସୁଥିଲା। ଗୋସ୍ୱାମୀଜୀ କିନ୍ତୁ ବଡ଼ି ଭୋର୍‌ରୁ ରାତି ୧୦ଟା ପର୍ଯ୍ୟନ୍ତ ରୋଗୀମାନଙ୍କର ଅକ୍ଲାନ୍ତ ସେବାରେ ନିଯୁକ୍ତ ରହୁଥିଲେ। ଏ ସମୟରେ ହଇଜାର ଇଂଜେକ୍ସନ ଚ୍ଵଲୁ ହୋଇଥିଲେ ମଧ୍ୟ ଇଂଜେକ୍ସନ ମିଳୁ ନଥିଲା ବା ଇଂଜେକ୍ସନ ଦେବାକୁ ଡାକ୍ତର ଅଥବା କମ୍ପାଉଣ୍ଡର ନଥିଲେ। ବୈଦ୍ୟଙ୍କ ସହିତ ଗ୍ରାମର ୪/୫ ଜଣ ସାହସୀ ଯୁବକ ରହି ତାଙ୍କୁ ଖୁବ୍ ସାହାଯ୍ୟ କରୁଥିଲେ। ବୈଦ୍ୟରାଜ ଓଟର ମୂତ୍ର ସହିତ ପିଆଜ ରସ ମିଶାଇ ଏକ ଔଷଧ

ତିଆରି କରି ରୋଗୀଙ୍କୁ ପିଆଇବାରୁ ରୋଗ ଉପଶମ ହେବାକୁ ଲାଗିଲା।

ଏହି ସମୟରେ ରାଜସ୍ଥାନରେ ଛୁଆଁ-ଅଛୁଆଁ ବାରଣ ସାଂଘାତିକ ଭାବରେ ଥିଲା, ମାତ୍ର ବୈଦ୍ୟରାଜ ଚମାର ତଥା ଅସ୍ପୃଶ୍ୟ ଲୋକଙ୍କୁ ଦେବତୁଲ୍ୟ



ଜ୍ଞାନରେ ସେବା କରିବାକୁ ଲାଗିଲେ। କେତେଥର ରୋଗୀମାନଙ୍କର ମଳମୂତ୍ର ସଫା କରିବା ସହିତ ରୋଗିଣୀ ମାତାଙ୍କ ପିଲାମାନଙ୍କର ମଧ୍ୟ ଯତ୍ନ ନେବାକୁ ପଡୁଥିଲା। ସେ ଏ ସମସ୍ତ କର୍ମ ନାମ-ଯଶ ନିମିତ୍ତ କରୁ ନଥିଲେ, ସେ କେବଳ ନିଜର କର୍ତ୍ତବ୍ୟ ମନେ କରି ମୃତ୍ୟୁ ସହିତ ଲଢ଼ି ନିର୍ବିକାରଭାବରେ ଏସବୁ କରୁଥିଲେ।

ଗୋସ୍ୱାମୀଜୀ ମୋଟା ଲୋକ ଥିଲେ। ତାଙ୍କର ସେତେବେଳେ ବୃଦ୍ଧାବସ୍ଥା। ତଥାପି ସକାଳୁ-ରାତିଅଧ ପର୍ଯ୍ୟନ୍ତ ଅକ୍ଳାନ୍ତ ପରିଶ୍ରମ କରନ୍ତି। ସାମାନ୍ୟ ଭୋଜନ କରି ବିଛଣାରେ ପଡୁ ପଡୁ ରୋଗିଣୀ ପିଲାଙ୍କ ମାଆର ଆକୁଳ କ୍ରନ୍ଦନ ଶୁଣି ତୁରନ୍ତ ଉଠି ସେବାରେ ଲାଗି ପଡ଼ନ୍ତି। ସେ ସର୍ବଦା ପ୍ରଭୁସ୍ମରଣ ପୂର୍ବକ ରାତିମାନ ଜାଗ୍ରତ ରହି ଯାଆନ୍ତି। ଧୀରେ ଧୀରେ ହଇଜାର ପ୍ରକୋପ କମିଲା। ଲୋକମାନେ ଗ୍ରାମକୁ ଲେଉଟିବାକୁ ଲାଗିଲେ। ଗୋସ୍ୱାମୀଜୀ କେତେଦିନରୁ ଅକ୍ଳାନ୍ତ ପରିଶ୍ରମରେ ବେହାଲ ହୋଇ ଯାଇଥିଲେ।

ପାଖ ଗ୍ରାମର ଲୋକମାନେ ଗୋସ୍ୱାମୀଜୀଙ୍କର ସେବା ସମ୍ବନ୍ଧରେ ଅବଗତ ହୋଇ ତାଙ୍କୁ ବହୁସଂଖ୍ୟାରେ ଦର୍ଶନ କରିବାକୁ ଆସିଲେ ଏବଂ ସମସ୍ତେ

ମିଳିମିଶି ସ୍ଥିର କଲେ ତାଙ୍କୁ ଏକ ସଭା କରି ସମ୍ବର୍ଦ୍ଧନା କରାଯିବ। ଏକଥା ଶୁଣି ସେ ଅତ୍ୟନ୍ତ ବିନୟ ପୂର୍ବକ କହିଲେ "ମୁଁ ମୋର କର୍ତ୍ତବ୍ୟ ପାଳନ କରିଛି। ମୁଁ ଯାହା କରିଛି ତାହା ଭଗବାନ ଧନ୍ୱନ୍ତରୀଙ୍କର ଆଜ୍ଞାରେ କରିଛି। ଏହି କର୍ମ ଆମର ଦେଶର ପରମ୍ପରା। ମୁଁ ତ ନିମିତ୍ତ ମାତ୍ର।"

କିଛି ଦିନ ପରେ ଗୋସ୍ୱାମୀଜୀ ଅସୁସ୍ଥ ହୋଇପଡ଼ିଲେ। ତାଙ୍କର ଅସୁସ୍ଥତାର ଖବର ପାଇ ବହୁ ସଂଖ୍ୟାରେ ଲୋକ ତାଙ୍କର ଦର୍ଶନ ନିମନ୍ତେ ଆସିଲେ। ତାଙ୍କର ଅନ୍ତିମ ସମୟ ଆସିଯାଇଥିବାରୁ ସେ ମୃତ୍ୟୁମୁଖରେ ପତିତ ହେଲେ। ଗ୍ରାମରେ ଶୋକର ଛାୟା ଖେଳିଗଲା। ବିଶେଷ କରି ଅଛୁଆଁ ଲୋକମାନଙ୍କର କ୍ରନ୍ଦନ ରୋଳରେ ଆକାଶ ପ୍ରକମ୍ପିତ ହେଲା। ତାଙ୍କର ସତ୍କାରରେ ଏଭଳି ଅଗଣିତ ଲୋକଙ୍କର ସମାଗମ ସେ ଗ୍ରାମ ଓ ଆଖପାଖ ଗ୍ରାମରେ କେବେ ଦେଖା ନଥିଲା।



# ପିତୃଋଣ

ରାଜସ୍ଥାନର ଚୁରୁ ଗୋଟିଏ ଐତିହାସିକ ସ୍ଥଳ । ଶହେ ବା ଦେଢ଼ଶହ ବର୍ଷତଳେ ଏଠାରେ ଏକ ପ୍ରତିଷ୍ଠିତ ବୈଶ୍ୟ ପରିବାର ରହୁଥିଲେ । ତାଙ୍କର ଅଫିମ ବ୍ୟବସାୟ ଥିଲା ଏବଂ ସେ ପ୍ରଚୁର ଧନ ଉପାର୍ଜନ କରୁଥିଲେ । ଯେତେବେଳେ ଅଫିମ ନିମିତ୍ତ ଚିନ୍ ଏବଂ ବ୍ରିଟେନ୍ ମଧ୍ୟରେ ଯୁଦ୍ଧ ହେଲା, ସେତେବେଳେ ଉକ୍ତ ମହାଜନଙ୍କର ବ୍ୟବସାୟ ବନ୍ଦ ହୋଇଗଲା ଏବଂ ସେ କରଜରେ ବୁଡ଼ିଗଲେ ।

ଏହାପରେ ପରିବାରର ସ୍ୱାମୀ ଶେଠ ଉଜାଗରମଲଙ୍କର ଘରୁ ବାହାରିବା ବନ୍ଦ ହୋଇଗଲା । ଯଦି କେହି ତାଙ୍କୁ ସାକ୍ଷାତ୍ କରିବାକୁ ଯାଉଥିଲେ, ଶେଠଜୀ ମୁହଁ ଘୋଡ଼ାଇ ହୋଇ ରହୁଥିବାରୁ କେହି ତାଙ୍କୁ ଦେଖିପାରୁ ନଥିଲେ । ଏ କାରଣରୁ କମ୍ ବୟସରେ ତାଙ୍କର ଦେହାନ୍ତ ହୋଇଗଲା । ତାଙ୍କ ପରେ କେବଳ ତାଙ୍କର ସ୍ତ୍ରୀ ଏବଂ ଏକମାତ୍ର ତେରବର୍ଷର ପୁଅ ରାମଦୟାଲ ଥିଲେ ।

ଜମି, ସୁନା ଗହଣା ଇତ୍ୟାଦି ବିକ୍ରି କରି ଉଜାଗରମଲ ଅନେକାଂଶରେ ଋଣ ପରିଶୋଧ କରିଥିଲେ ମଧ୍ୟ ବେଶ୍ କିଛି କରଜ ବାକି ରହିଯାଇଥିଲା । ଅନ୍ତିମ ସମୟରେ ସେ ତାଙ୍କର ପତ୍ନୀ ଏବଂ ପୁତ୍ର ରାମଦୟାଲଙ୍କୁ ଗୋଟିଏ ଲେଖା ଦେଇଥିଲେ ଯେଉଁଥିରେ କି ଋଣଦାତାମାନଙ୍କର ଠିକଣା ରହିଥିଲା । ତାଙ୍କର ଅନ୍ତିମ ଇଚ୍ଛା ଥିଲା ଯେ–ଯେଉଁଦିନ ସୁଧ ଓ ମୂଳସହିତ ତାଙ୍କ କରଜ ଶୁଝିଯିବ ତାଙ୍କର ଆତ୍ମାକୁ ଶାନ୍ତି ମିଳିବ ।

ଦୁଇବର୍ଷ ପରେ ରାମଦୟାଲର ବିଭାଘର ହୋଇଗଲା । ବିବାହ ନିମିତ୍ତ ବିଧବା ମା ପୁଣି କରଜ କରି ପୁଅର ବିଭାଘର ଧୁମ୍-ଧାମ୍‌ରେ ସମ୍ପନ୍ନ କରିବାରୁ ଲୋକମାନେ କୁହା-କୁହି ହେଲେ ଯେ ପିତୃଋଣ ଶୁଝାସରିନି ବିଭାଘର ଆଡ଼ମ୍ବରରେ କରାହେଲା । ରାମଦୟାଲ ଏହା ଶୁଣି ଅତ୍ୟନ୍ତ ମର୍ମାହତ ହୋଇ ସୁଦୂର ଆସାମ ଯିବାକୁ ବସିଲା । ଏ ସମୟରେ ତାର ଆଠମଙ୍ଗୁଳା ସରି ନଥିଲା । ମାଆ ଓ ପଡ଼ୋଶୀମାନେ ବୁଝାଇଲେ ଯେ ନୂଆ

ହୋଇ ବାହା ହୋଇଛୁ । ଆଠ ଦିନ ହୋଇନି, କିଛି ଦିନ ରହିଯା ତା' ପରେ ଯିବୁ । ମାତ୍ର ରାମଦୟାଲ ତା ଜିଦ୍‌ରେ ଅଟଳ ରହି ତାର ବାଳିକା ସ୍ତ୍ରୀ ଓ ବିଧବା ମାଆକୁ ଛାଡ଼ି ଆସାମ ଯାଉଥିବା ଲୋକଙ୍କ ସହିତ ବାହାରିଗଲା ।

ସେତେବେଳେ ଆସାମରେ ପହଞ୍ଚିବା ପାଇଁ ମୋଟ ତିନି ଚାରି ମାସ ସମୟ ଲାଗୁଥିଲା । ରାଜସ୍ଥାନରୁ କାନପୁର ୨୫-୩୦ ଦିନ ଲାଗୁଥିଲା । କାନପୁରରୁ କଲିକତାକୁ ଟ୍ରେନ୍ ଥିଲା । ପୁଣି କଲିକତାରୁ ଆସାମ ନୌକାରେ ଯିବାକୁ ଦେଢ଼-ଦୁଇମାସ ଲାଗୁଥିଲା । ନୌକାରେ ଯିବା ସମୟରେ ଅନେକବାର ନୌକା ବୁଡ଼ିଯିବା ମଧ୍ୟ ଶୁଣାଯାଉଥିଲା । ତାଛଡ଼ା ନୌକାରେ ଯିବା ସମୟରେ ନୌକାଯାତ୍ରୀ ଜଳଦସ୍ୟୁମାନଙ୍କ ହାବୁଡ଼ରେ ପଡୁଥିଲେ । ତେଣୁ ଅନେକ ଲୋକ ମିଶି ପର୍ଯ୍ୟାପ୍ତ ବନ୍ଦୋବସ୍ତ କରି ଆସାମ ଯାତ୍ରା କରୁଥିଲେ । ଥରେ ଗଲା ମାନେ ଆସାମରୁ ଫେରିବାରେ ଆଠଦଶବର୍ଷ ବିତିଯାଉଥିଲା । ଯାତ୍ରା ସଂକଟାପନ୍ନ ଥିବାରୁ ଅନେକ ଫେରିପାରୁ ନଥିଲେ । ଆସାମ ଯିବା ସମୟରେ ରାମଦୟାଲର କେବଳ ଗୋଟିଏ ଧୋତି, ଗୋଟିଏ ଲୋଟା ଏବଂ ଖାଇବା ପାଇଁ ପାଖରେ କିଛି ଚଣା-ମୁଢ଼ି ଇତ୍ୟାଦି ଥିଲା । ଏପରି ଅବସ୍ଥାରେ ରାମଦୟାଲର ଦୃଢ଼ ମନୋବଳ, ପ୍ରବଳ ଉତ୍ସାହ ତଥା ସାହସ ଥିଲା ମୁଖ୍ୟ ସମ୍ବଳ ।

ଆସାମର ଜଳବାୟୁ ଅତ୍ୟନ୍ତ ଖରାପ ଥିବାରୁ ସେଠାରେ ମେଲେରିଆ ଏବଂ କଳାଜ୍ୱରର ପ୍ରକୋପ ଥାଏ । ମାତ୍ର ସେଠାରେ ରୋଜଗାର ପନ୍ଥା ଭଲ ଥିବାରୁ ଲୋକମାନେ ପାଣି ବଦଳରେ ଚା ପାନ କରି ରହି ଯାଉଥିଲେ । ସେ ସମୟରେ ମେଲେରିଆ ନିରାକରଣ ପାଇଁ କୁଇନାଇନ୍ ଆବିଷ୍କାର ହୋଇ ନଥିଲା ।

ରାମଦୟାଲକୁ ଆସାମର ତିନ୍‌ସୁକିଆ ଠାରେ ପହଞ୍ଚିବାକୁ ଚାରିମାସ ସମୟ ଲାଗିଥିଲା । ସେଠାରେ ପହଞ୍ଚି ସେ ଘର ଘର ବୁଲି ଲୁଗାବେପାର କଲା । ସକାଳୁ ପିଠିରେ ଲୁଗା ବୋହି ସନ୍ଧ୍ୟାବେଳକୁ ଫେରୁଥିଲା । ସେ ଦିନକୁ ଦୁଇଟଙ୍କା ରୋଜଗାର କରୁଥିଲା । ସେ ସମୟରେ କିଛି ମାରୱାଡ଼ି ବ୍ୟବସାୟୀ ସେଠାରେ ବ୍ୟବସାୟ ଆରମ୍ଭ କରି ଦେଇଥିଲେ । ମାରୱାଡ଼ି ବ୍ୟବସାୟୀମାନେ ଗୋଟିଏ ନିୟମ କରିଥିଲେ ଯେ ଯଦି କେହି ପ୍ରଥମ କରି

ଆସି ତାଙ୍କର ଲୁଗାପଟା ଫେରି କରୁଥିଲା, ତାକୁ ମାଗଣା ରହିବା ଓ ଖାଇବା ଦେଉଥିଲେ। ରୋଜଗାର ବଢ଼ିଲା ପରେ ଫେରିବାଲାମାନେ ସେମାନଙ୍କର ବ୍ୟବସ୍ଥା କରୁଥିଲେ। ରାମଦୟାଲକୁ ତେଣୁ ଫେରି କରିବାରେ ବିଶେଷ ଅସୁବିଧା ହୋଇନଥିଲା।

ପରିଶ୍ରମ ଏବଂ ସଚ୍ଚୋଟ ବ୍ୟବହାର ଫଳରେ ରାମଦୟାଲ ଆଠଦଶ-ବର୍ଷରେ ବେଶ୍ କିଛି ଧନ ଉପାର୍ଜନ କରିପାରିଲା, ଯାହାଦ୍ୱାରା କି ସେ ତାର ପିତାଙ୍କର କରଜ ସୁଧ ସହିତ ପରିଶୋଧ କରି ପାରିବ। ବରଷକରେ ଥରେ ବା ଦୁଇଥର ସେ ମାଆଠାରୁ ଚିଠି ପାଉଥିଲା। ମାଆର ଏକମାତ୍ର ଇଚ୍ଛା ପୁଅ କେବେ ଫେରିବ। ସେ ସମୟରେ ପତ୍ନୀ ପତି ନିକଟକୁ ପତ୍ର ଲେଖିବାଟା କଳ୍ପନାତୀତ।

ଦିନ ଗଡ଼ିଚାଲିଲା। ଆହୁରି ଛଅ-ସାତ ବର୍ଷ ବିତିଗଲା ପରେ ରାମଦୟାଲ ପାଖରେ ୪୦-୫୦ ହଜାରର ପୁଞ୍ଜି ହୋଇଗଲା ଏବଂ ନିଜର ଦୋକାନଟିଏ ମଧ୍ୟ କରିପାରିଲା। ଏ ସମୟରେ ରାମଦୟାଲକୁ ଚିଠି ମିଳିଲା ଯେ ତାର ମା ଗୁରୁତର ରୋଗରେ ପୀଡ଼ିତ ଏବଂ ସେ ମୃତ୍ୟୁ ପୂର୍ବରୁ ତାକୁ ଦେଖିବାକୁ ଚାହୁଁଛି।

ନିଜର ଦୋକାନର ସମସ୍ତ ବ୍ୟବସ୍ଥା କରି ଏବଂ ତାର ଗୁମାସ୍ତାକୁ ସବୁ ବୁଝାଇଦେଇ ରାମଦୟାଲ ନିଜ ଦେଶ ଅଭିମୁଖେ ବାହାରିଲା। ଆସାମରୁ ତିନିମାସ ପରେ ଭିୱାନୀ ଠାରେ ପହଞ୍ଚିଲା। ସେତେବେଳକୁ କାନପୁରରୁ ଭିୱାନୀ ପର୍ଯ୍ୟନ୍ତ ରେଲଯାତ୍ରାର ସୁବିଧା ହୋଇଯାଇଥିଲା। ଯେତେବେଳେ ସେ ପ୍ରଥମ କରି ଆସାମ ଯାତ୍ରା ଆରମ୍ଭ କରିଥିଲା, ସେତେବେଳେ ସେ ଘରୁ ଚାଲି ଚାଲି କାନପୁର ଆସିଥିଲା। ଏବେ ଅନେକ କିଛି ସୁବିଧା ହୋଇଯାଇ ଥିବାରୁ ସେ ଗୋଟିଏ ଓଟ ଭଡ଼ାରେ ଆଣି ତା ଉପରେ ବସି ଆସିଲା। ୧୬/୧୭ ବର୍ଷ ପରେ ରାମଦୟାଲ ରାଜସ୍ଥାନକୁ ଫେରୁଥିଲା। ଆସାମରେ ରହି ସେଠାକାର ପାରିପାର୍ଶ୍ୱିକ ସବୁଜିମାରେ ସେ ଏଠାକାର ମରୁଭୂମିକୁ ଏକପ୍ରକାର ଭୁଲିଯାଇଥିଲା। ମାତ୍ର ଯେତେବେଳେ ସେ ମରୁଭୂମିର ବାଲିକୁଦ ଏବଂ ସୂର୍ଯ୍ୟକିରଣରେ ବାଲୁକାଶଯ୍ୟାର ଚିକ୍‌ଚିକ୍ ସୁନେଲିରଙ୍ଗ ଦେଖିଲା, ତା' ମନରେ ଅଫୁରନ୍ତ ଆନନ୍ଦ ଆସିଲା ଏବଂ ତାର ପିଲାଦିନର କଥା

ମନେ ପଡ଼ିଗଲା । ସେ ପିଲାଦିନେ ଏହି ମରୁଭୂମିର ବାଲିରେ କେତେ ଖେଳୁଥିଲା । ତାର ଇଚ୍ଛା ହେଲା ଓଟ ଉପରୁ ଓହ୍ଲାଇ ପଡ଼ି ବାଲିରେ ଗଡ଼ିଯିବାକୁ ।

ଚାରିଦିନ ପରେ ସକାଳ ବେଳା ସେ ନିଜ ଗ୍ରାମର ସୀମାରେ ପହଞ୍ଚିଲା । ସେ ଦେଖିଲା ଯେ କେତେ ଜଣ ଗୋଟିଏ ସଧବା ସ୍ତ୍ରୀର ଶବକୁ କାନ୍ଧେଇ ସତ୍କାର ନିମନ୍ତେ ଶ୍ମଶାନକୁ ନେଇ ଯାଉଛନ୍ତି । ରାମଦୟାଲ ୧୬/୧୭ ବର୍ଷ ପରେ ତାର ଗ୍ରାମକୁ ଫେରୁଛି । ତେଣୁ ସେ କାହାକୁ ଚିହ୍ନି ପାରୁ ନଥିଲା



କିମ୍ବା ଅନ୍ୟମାନେ ମଧ୍ୟ ତାକୁ ଚିହ୍ନି ପାରୁ ନଥିଲେ । ଶବବାହକମାନଙ୍କର ନିଜ ମଧ୍ୟରେ କଥାଭାଷା ରାମଦୟାଲ କାନରେ ପଡ଼ିଲା । ସେମାନେ କୁହାକୁହି ହେଉଥିଲେ–"ଏ ବିଚାରୀ ଜୀବନରେ କଣ ଦେଖିଲା ବା ଜାଣିଲା? ଏହାର ସତରବର୍ଷ ପୂର୍ବେ ବିବାହ ହୋଇଥିଲା । ବିଭାଘରର ଆଠଦିନ ନ ପୁରୁଣୁ ତାର ପତି ବିଦେଶ ଯାଇ ଏବେ ପର୍ଯ୍ୟନ୍ତ ଫେରିନାହିଁ । ଏହାର ଏକମାତ୍ର ଶାଶୁଟି ସାହାରା ଥିଲା ଯେ ସେ ମଧ୍ୟ ତିନିମାସ ପୂର୍ବରୁ ବୋହୂକୁ ଛାଡ଼ି ପରଲୋକ ଚାଲିଗଲାଣି ।"

ରାମଦୟାଲ ଚମକି ପଡ଼ିଲା । ଯେଉଁ ବାତ୍ସଲ୍ୟମୟୀ ମାତା ଏବଂ

ସ୍ନେହମୟୀ ପତ୍ନୀ ସହିତ ମିଳନର ଆକାଂକ୍ଷାରେ ରାମଦୟାଲ ଗ୍ରାମକୁ ଫେରିଥିଲା, ତା ପାଇଁ ଏ ଦୁଇଜଣ ନଥିଲେ। ଯାହା କିଛି ତା ପାଇଁ ଥିଲା କେବଳ ଗ୍ରାମର ପଡ଼ୋଶୀମାନଙ୍କର ତା ବିରୁଦ୍ଧରେ ନିନ୍ଦା ବା ସ୍ତୁତି। ରାମଦୟାଲ ନିଜର ପିତୃଋଣ ପରିଶୋଧ କଲା ଏବଂ ଏହାପରେ ଗ୍ରାମରୁ ବିଦା ହୋଇଗଲା। ତାର ପୈତୃକ ଗୃହ ଥିଲେ ମଧ୍ୟ ତାର ସେ ଗୃହରେ ପ୍ରବେଶ କରିବାକୁ ସାହସ ନଥିଲା। ଏତେ ବଡ଼ ବିପତ୍ତିରେ ମଧ୍ୟ ରାମଦୟାଲର ସନ୍ତୋଷ ଥିଲା ଯେ ସେ ପିତୃଋଣ ମୂଳ-ସୁଧ ସହିତ ପରିଶୋଧ କରିପାରିଛି।

ରାମଦୟାଲର ପିତା ତାକୁ କେବଳ ଖଣ୍ଡିଏ କାଗଜ ଦେଇ ଯାଇଥିଲେ। ସେଥିରେ ସେ ଯେଉଁମାନଙ୍କ ଠାରୁ କରଜ ନେଇଥିଲେ, ସେ ସମସ୍ତ ଲେଖାଥିଲା। ସେ ସମୟରେ ଟଙ୍କା ଦେଣନେଣରେ ସରକାରୀ ଦଲିଲ୍ ନଥିଲା କି ସାକ୍ଷୀ ବା ଜାମିନ୍ ରହୁ ନଥିଲେ। ମାତ୍ର ଲୋକମାନେ ବେଇମାନ ନଥିଲେ। କାରଣ ସେମାନଙ୍କର ଈଶ୍ୱରଙ୍କ ଉପରେ ଆସ୍ଥା ଅତୁଟ ଥିଲା। ସେତେବେଳେ ଦେଖାଯାଉଥିଲା ଯେ ପୂର୍ବଜଙ୍କ ଋଣ ତାଙ୍କର ପୁଅ ଏବଂ ନାତିମାନେ ୩୦/୪୦ ବର୍ଷ ପରେ ମଧ୍ୟ ପରିଶୋଧ କରୁଥିଲେ।



# ଭୁରୀର ଆଈ

ଏ କଥାଟି ବହୁତ ପୁରୁଣା–କିନ୍ତୁ ଲାଗୁଛି ଯେମିତି କାଲିର ଘଟଣା। ଭୁରୀର ଆଈ ଜାତିରେ ବୈଶ୍ୟ, ପତଳା ଶରୀର, ମଧ୍ୟମ ବର୍ଣ୍ଣ, ଚେହେରା ସାଧାରଣ। ପ୍ରୌଢ଼ ଅବସ୍ଥା ପାର କରି ବାର୍ଦ୍ଧକ୍ୟ ଆଡ଼କୁ ଗତି କଲାଣି। ପାହାନ୍ତା ପହରରୁ ରାତି ଦଶଟା ଯାଏଁ କାମରେ ଲାଗିଥାଏ। ନିଜ ପାଇଁ ତ କାମ କରିବାକୁ ପଡ଼େ, ତା'ଛଡ଼ା ଲୋକଙ୍କ କାମ ମଧ୍ୟ କରେ। ଟିକିଏ ପ୍ରଶଂସା କରି କହିଦେଲେ–ନାନୀ, ଏ କାମ ତୁମଛଡ଼ା ଆଉ କେହି ପାରିବେ ନାହିଁ–ତାହେଲେ ସେଇ କାମ ସେ ପ୍ରାଣ ଲଗେଇ କରିଥାଏ।

ନାନୀର ଝିଅ ବା ଝିଅର ଝିଅ (ନାତୁଣୀ) 'ଭୁରୀ'କୁ ଖୁବ୍ କମ୍ ଲୋକ ଦେଖିଥିବେ। ସେ ଦୁଇଜଣ ବହୁତ ଦିନ ପୂର୍ବରୁ ମରି ଗଲେଣି। କିନ୍ତୁ 'ଭୁରୀ' ନାଁ ଶୁଣିଲେ ତାକୁ ତିରିଶବର୍ଷ ପୂର୍ବର ଏକ ବାଳିକାର କଅଁଳିଆ ମୁହଁ ମନେ ପଡ଼ିଯାଏ ଓ ଆଖିରେ ଲୁହ ଆସିଯାଏ। ଆଜିକାଲି ସେ ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତଙ୍କ 'ଆଈ'।

ପ୍ରତ୍ୟେକ ବର୍ଷ ଗ୍ରୀଷ୍ମକାଳରେ ଲୋକମାନେ ବଦ୍ରୀ କେଦାର ଯାତ୍ରା କରୁଥିଲେ। ରାସ୍ତା ବହୁତ ଅସୁବିଧା ଜନକ। ଯିବା ଆସିବା ପାଇଁ ଯାନବାହନର ସୁବିଧା ଏତେ ନଥିଲା, ତେଣୁ ଯାତ୍ରା ବେଶ୍ କଷ୍ଟକର ଥିଲା। "ଯେବେ ଯିବ ବଦରୀ, କାୟା ଯିବ ସୁଧୁରୀ।" ଏପରି ଭାବନାର ପ୍ରାବଲ୍ୟ ହେତୁ ବୃଦ୍ଧ ଓ ବେମାର ବ୍ୟକ୍ତି ସୁଦ୍ଧା ଏହି ବିକଟ ଓ ଦୁର୍ଗମ ଯାତ୍ରାରେ ଯିବା ପାଇଁ ପ୍ରସ୍ତୁତ ଥିଲେ।

ମାସ ମାସ ଆଗରୁ ସାଂଗରେ ନେଇକରି ଯିବାର ସରଞ୍ଜାମର ପ୍ରସ୍ତୁତି ହେଉଥିଲା। ଗରମ ଲୁଗାପଟା, ଛତା, ଶୁଖିଲା ପରିବାପତ୍ର, ଲୁଣିଆ ଓ ମିଠା ଜଳଖିଆ, ଲବଙ୍ଗ, ଯାଇତ୍ରୀ, ଜାଇଫଳ ଇତ୍ୟାଦି ରଖାଯାଉଥିଲା। ପାଖ ପଡ଼ୋଶୀଙ୍କ ଠାରୁ ବିଦାୟ ନେବା ଏବଂ କରିଥିବା ଓ ନ କରିଥିବା କାମର ଦୋଷ ପାଇଁ କ୍ଷମା ପ୍ରାର୍ଥନା ମଧ୍ୟ କରାଯାଉଥିଲା (କାଳେ ଫେରି ଆସି ପାରିବେ ନାହିଁ)।

ସେ କାଳରେ ଦୁଇଟଙ୍କା ମାସକୁ ବେତନ ଦେଇ ଗ୍ଦକରଟିଏ ରଖିବା

ଲୋକଙ୍କୁ ବହୁତ ଭାରୀ ଲାଗୁଥିଲା । ତେଣୁ ଯାତ୍ରାକାଳରେ ସମସ୍ତେ ମିଶି ସବୁ କାମ କରୁଥିଲେ । ଏମିତିରେ ଯାତ୍ରୀଙ୍କ ସଂଖ୍ୟା ପଚିଶ ତିରିଶ ପର୍ଯ୍ୟନ୍ତ ପହଞ୍ଚି ଯାଉଥିଲା, କିନ୍ତୁ ସେମାନେ ପାଞ୍ଚ ସାତ ଦଳରେ ବିଭକ୍ତ ହୋଇ ଯାଉଥିଲେ । ଯାତ୍ରାର ବହୁତ ଦିନ ପୂର୍ବରୁ 'ଭୁରୀର ଆଈ'କୁ କିଛି ଲୋକ ନିଜ ଦଳରେ ଯିବା ପାଇଁ ସମ୍ମତ କରାଇ ନେଉଥିଲେ । ଖାଇବା ଖର୍ଚ୍ଚ ଛଡ଼ା ତା ପାଇଁ ଆଉ କିଛି ଖର୍ଚ୍ଚ ପଡୁ ନଥିଲା, କିନ୍ତୁ ସେ କାମ କରୁଥିଲା ଚାରିଟା ଲୋକର । ଏହା ବ୍ୟତୀତ ସେ କେତେଥର ଉତ୍ତରାଖଣ୍ଡ ଯାତ୍ରା କରି ସାରିଥିଲା, ତେଣୁ ଜଣେ ଭଲ 'ଗାଇଡ୍'ର କାମ ଦେଉଥିଲା । କେଉଁ ପାନ୍ଥଶାଳାରେ ରହିଲେ ସୁବିଧା ହେବ, କେଉଁଠି କଣ ଦେଖିବାର ଅଛି, ଏସବୁ ତାକୁ ଭଲଭାବରେ ଜଣାଥିଲା । ଆଈ ଯାହାଙ୍କୁ ପ୍ରଥମରୁ ହଁ କରିଥାଏ, ତାଙ୍କ ସଂଗରେ ହିଁ ଯାଏ । ନିଜ ବନ୍ଧୁବାନ୍ଧବଙ୍କ କହିବାରେ ସେ ନିଜର ସମ୍ମତି ବଦଳାଉ ନଥିଲା ।

ପ୍ରାୟ ୨୫ ବର୍ଷ ପୂର୍ବେ ଆମେମାନେ ବଦ୍ରୀ-କେଦାର ଯାଇଥିଲୁ । ପୂର୍ବବର୍ଷରୁ 'ଭୁରୀର ଆଈ'ଙ୍କୁ ଆମେ କହି ରଖିଥିବାରୁ ସେ ଆମ ଦଳରେ ଗଲେ ।

ଋଷିକେଶ ଠାରୁ ପଦଯାତ୍ରା, ଘୋଡ଼ାରେ ଯାତ୍ରା ବା ପାଲିଙ୍କିରେ ଯାତ୍ରା କରିବାକୁ ପଡୁଥିଲା । ସେ ସମୟରେ ଟଙ୍କାଟିଏ ଭଙ୍ଗାଇବା ଆଜିକାଲିର ଶହେଟଙ୍କା ଭଂଗାଇବା ସଂଗରେ ସମାନ । ଜିନିଷ ବୋହିବା ପାଇଁ ଲୋକେ କୁଲି କରୁ ନଥିଲେ, ନିଜ ଜିନିଷ ନିଜେ ବୋହୁଥିଲେ । ଯାତ୍ରାର ପ୍ରଥମ ଭାଗରେ ସମସ୍ତେ ଖୁସିମନରେ ଚାଲୁଥିଲେ, କିନ୍ତୁ ପରେ ପରେ କାହାକୁ ଝାଡ଼ା, କାହାକୁ ଜ୍ୱର, କାହାର ମୁଣ୍ଡବିନ୍ଧା ବାହାରି ପଡୁଥିଲା । ସେତେବେଳେ 'ଆଈ' ନିଜ ଗଣ୍ଠିଲି ସହିତ ସେମାନଙ୍କ ବୋଝ ଧରି ଚାଲୁଥିଲେ ନିଜ ଇଚ୍ଛାରେ ।

ସାତ ଆଠ ମାଇଲ ପରେ ଲୋକେ ଯେତେବେଳେ କେଉଁ ପାନ୍ଥଶାଳାରେ ପହଞ୍ଚୁଥିଲେ, ସେତେବେଳକୁ ପୂରା ଥକି ଯାଉଥିଲେ ଓ ପହଞ୍ଚୁ ପହଞ୍ଚୁ ଶୋଇ ପଡୁଥିଲେ । ଗୋଡ଼ ବଥା ସଂଗରେ ପେଟର ଭୋକ ବି ବଢ଼ି ଯାଉଥିଲା । ଏପରି ସମୟରେ ରନ୍ଧାରନ୍ଧି କରିବାରେ ସମସ୍ୟା ଉପୁଜୁଥିଲା । 'ଆଈ'ଙ୍କୁ କହିବାର ଆବଶ୍ୟକତା ପଡୁନଥିଲା । ସେ ଚୁଲି

ଲଗାଇ ଡାଲି ବସାଇଦେଇ ଅଟା ଦଳିବା ଆରମ୍ଭ କରିଦେଉଥିଲେ । ଆମେ ଯଦି କେବେ ପଚ୍ଚାରୁ, ଆଈ କେତେ ଥର ବଦରୀ ଆସିଛ? ସେ ଦୁଇହାତ ଆଙ୍ଗୁଠି ଆଠ ନଅଟି ବାହାର କରି ଦେଖାଉଥିଲେ । ସେ କହନ୍ତି, ମୁହଁରେ କହିଲେ ପୁଣ୍ୟ କମିଯିବ ।

ଆମେ ଯେତେ ଯେତେ ପାହାଡ଼ ଉପରକୁ ଗଲୁ, ଥଣ୍ଡା ବଢ଼ି ବଢ଼ି ଚାଲିଲା । ଆଈଙ୍କ ପାଖରେ ଘୋଡ଼େଇ ହେବାକୁ ଦୁଇଟି କମ୍ବଳ ଓ ବିଛାଇ ଶୋଇବା ପାଇଁ ଚାଦର ଖଣ୍ଡିଏ ଥିଲା । ଯୋଶୀମଠ ପହଞ୍ଚିବା ପୂର୍ବରୁ ଆଈ କେଉଁ ଦକ୍ଷିଣୀସାଧୁଙ୍କୁ ଗୋଟିଏ କମ୍ବଳ ଦେଇ ଦେଇଥିଲେ । ଯୋଶୀମଠ ପହଞ୍ଚିବା ବେଳକୁ ରାତି ହୋଇ ଯାଇଥିଲା । ଅଳ୍ପ ଅଳ୍ପ ବର୍ଷା ହେଉଥିଲା । ପାନ୍ଥଶାଳାର ବାରଣ୍ଡାରେ ବୁଢ଼ୀଟିଏ ଶୀତରେ ଥରୁଥିଲା । ଆଈ ତାଙ୍କୁ ତାଙ୍କ ଶେଷ କମ୍ବଳଟି ଦେଇଦେଲେ । ସାଂଗରେ ଥିବା ଲୋକମାନେ ତାଙ୍କୁ ସେଥିପାଇଁ ବହୁତ ଗାଳିମନ୍ଦ କଲେ । ଥଣ୍ଡାରୁ ରକ୍ଷା ପାଇବା ପାଇଁ ଆଉ ଜଣେ ମହିଳା ତାଙ୍କୁ ଧାର ସୂତ୍ରରେ କମ୍ବଳ ଖଣ୍ଡିଏ ଦେଲେ ।



ଆମେ ଯେଉଁ ଜାଗାରେ ବିଶ୍ରାମ ନେବାକୁ ପହଞ୍ଚୁ, କେଜାଣି କେଉଁଠୁ ଭୋକିଲା, ଫୁଙ୍ଗୁଳା ଲୋକଗୁଡ଼ାଏ ଆସି ତାଙ୍କୁ ଘେରିଯାନ୍ତି । ଆମେ

ହନୁମାନ ଚଟ୍ଟି ପହଞ୍ଚିଲା ବେଳକୁ ପ୍ରବଳ ଥଣ୍ଡା ପଡ଼ିଲାଣି । ଆଈ ତାଙ୍କ ପାଖରେ ଥିବା ଧାର ନେଇଥିବା କମ୍ବଳଟିକୁ ଜଣେ ଗରିବ ମହିଳାଯାତ୍ରୀକୁ ଦେଇଦେଲେ । ଯେଉଁ ମହିଳା ଧାରରେ ତାଙ୍କୁ କମ୍ବଳ ଦେଇଥିଲେ, ସେ ତାଙ୍କୁ ବହୁତ ଗାଳିମନ୍ଦ କଲେ–"ପାଖରେ କାଣି କଉଡ଼ି ନାହିଁ, ଦାନୀକର୍ଣ୍ଣ ଦେଖେଇ ହଉଛନ୍ତି ।" ଅନ୍ୟ ଲୋକମାନେ ମଝିରେ ପଡ଼ି ନାନୀଙ୍କୁ ଯାହା ସାହାଯ୍ୟ କରିଥାନ୍ତେ, କିନ୍ତୁ ସେମାନେ ମଧ୍ୟ ଆଈଙ୍କର ଏପରି ପ୍ରକୃତିକୁ ସହ୍ୟ କରୁ ନଥିଲେ । ରୋଷେଇ କରିବା ସମୟରେ ଦୁଇଓଳି ସେ ଦୁଇ ଗ୍ୱରିଜଣଙ୍କୁ ଲୁଚେଇ କରି ରୁଟି ଦେଇ ଦିଅନ୍ତି । ଏଇ କଥା ବରଦାସ୍ତ କରି ହୁଅନ୍ତା, କିନ୍ତୁ ବେଳେବେଳେ କାହାର ଜାକେଟ୍, କାହାର ଗ୍ୱଦର କମ୍ ହେବାକୁ ଲାଗିଲା । ସେଗୁଡ଼ିକୁ ଆଈ କୌଣସି ନା କୌଣସି ଲୋକଙ୍କୁ ଦରକାର ଥିବାର ଦେଖିଲେ ଦେଇ ଦେଇଥାନ୍ତି ଲୁଚେଇ କରି । ସେଥିପାଇଁ ସମସ୍ତେ ତାଙ୍କ ଉପରେ ରାଗୁଥାନ୍ତି । ମୁଁ ଦେଖିଲି ଲୋକେ ତାଙ୍କୁ ଗୋଟିଏ ଜାଗାରୁ ଅନ୍ୟ ଜାଗାକୁ ଯିବାବେଳେ ବାଟସାରା ଗାଳି ଦେଇ ଦେଇ ଗ୍ୱଲିଥାନ୍ତି ଏବଂ ସେ ସମସ୍ତଙ୍କ କଟୁବାକ୍ୟ ଚୁପ୍‌ଗ୍ୱପ ଶୁଣି ଶୁଣି ଆଖିରୁ ଲୁହ ଝରାଉଥାନ୍ତି ।

ତା'ପର ଦିନ ଆଈଙ୍କୁ ଦଳରୁ ଅଲଗା କରି ଦିଆଗଲା । ଯେତେବେଳେ ଅନ୍ୟମାନେ ପଛରେ ରହିଗଲେ, ମୁଁ ଆଈଙ୍କୁ ପଗ୍ୱରିଲି ତୁମେ ଏମିତି କାମ କାହିଁକି କରୁଛ? କିଛି ସମୟ ପରେ ଉଦାସୀ ସ୍ୱରରେ କହିଲେ–"ଏଇ ଲୋକମାନଙ୍କ ପାଖରେ ଦରକାର ଠାରୁ ଅଧିକ ଲୁଗାପଟା ଅଛି; କିନ୍ତୁ ଯାହାଙ୍କୁ ଦିଆଗଲା, ସେମାନେ ଶୀତରେ ଥରୁଥିଲେ । ଛୁଆମାନଙ୍କୁ ନେଇ ସେମାନେ ଆସିଥିଲେ, ଏ ଥଣ୍ଡା ସହନ୍ତେ କିପରି? ମୁଁ ଗାଁକୁ ଫେରି ମୂଲ ଲାଗି ଏମାନଙ୍କୁ ତାଙ୍କ ଜିନିଷର ମୂଲ୍ୟ ଦେଇଦେବି ।"

ମୁଁ ଭାବିବାକୁ ଲାଗିଲି, ଆଈ ତ ମାର୍କସ ବା ଏନ୍‌ଜେଲସ୍ ପଢ଼ିନାହାନ୍ତି, ତଥାପି ତାଙ୍କ ମନରେ ସାମ୍ୟବାଦର ଏ ଭାବନା ଆସିଲା କେଉଁଠାରୁ? ମୋତେ ଅନୁଭବ ହେଲା, ବାସ୍ତବରେ ସହଜ କରୁଣାର ଅନୁଭୂତି କୌଣସି ପୁସ୍ତକୀୟ ଜ୍ଞାନଠାରୁ ନିଶ୍ଚୟ ଅଧିକ ।

ଫେରିବା ସମୟରେ ସେ ରୋଷାଇ କାମ ପୂର୍ବବତ୍ କରୁଥାନ୍ତି, କିନ୍ତୁ ତାଙ୍କ ମନରେ ଆଉ ଉତ୍ସାହ ନଥାଏ । ସବୁବେଳେ ମନମରା ଓ ଭୟଭୀତ

ହୋଇ ରହିଥାନ୍ତି। ଯେତେବେଳେ ଦି'ଗ୍ରିଜଣ ଏକାଠି କଥା ହୁଅନ୍ତି, ସେ ଭାବନ୍ତି କି ତାଙ୍କ ବିଷୟରେ ଚର୍ଚ୍ଚା ହେଉଛି।

ହରିଦ୍ୱାର ପହଞ୍ଚିବା ପରେ କେତେ ଜଣ ମଥୁରା ବୃନ୍ଦାବନ ଗ୍ଲିଗଲେ। କେତେଜଣ ରାଜସ୍ଥାନ ଫେରିଲେ। ସମସ୍ତେ ପରସ୍ପରକୁ ଆଲିଙ୍ଗନ କରୁଥାନ୍ତି। କ୍ଷମାପ୍ରାର୍ଥନା କରୁଥାନ୍ତି। କିନ୍ତୁ ନାନୀ ସମସ୍ତଙ୍କ ଠାରୁ ଅଲଗା ଗୋଟିଏ କୋଣରେ ଠିଆ ହୋଇଥାନ୍ତି। ତାଙ୍କ ସଂଗରେ କଥାବାର୍ତ୍ତା ହେବାକୁ କେହି ଜରୁରୀ ମନେ କରୁ ନଥାନ୍ତି। ଲୋକମାନେ ଏତିକି ମଧ୍ୟ ପଗ୍ରିଲେ ନାହିଁ କି ଘରକୁ ଫେରିବାକୁ ତାଙ୍କ ପାଖରେ ପଇସା ଅଛି କି ନାହିଁ। ମୋତେ ସେଠାରୁ କାଶୀ ଯିବାକୁ ଥାଏ, ମୁଁ ଆଈଙ୍କୁ ମୋ ସାଂଗରେ ଯିବାକୁ କହିଲି, କିନ୍ତୁ ସେ ମନା କଲେ। ତାଙ୍କ ମନରେ ବିତୃଷ୍ଣା ଭାବ ଆସି ଯାଇଥିଲା। ଏମିତି ମନେ ହେଉଥିଲା କି ସେ ଯେପରି କିଛି ଦିନ ପାଇଁ ଏକାନ୍ତ ରହିବାକୁ ଗ୍ରହୁଁଛନ୍ତି। ବିଦାୟ ନେବା ବେଳେ ମୁଁ ନାନୀଙ୍କୁ କିଛି ଟଙ୍କା ଦେବାକୁ ଗ୍ରହିଁଲି, କିନ୍ତୁ ସେ ନମ୍ରତାପୂର୍ବକ ନେବାକୁ ମନା କଲେ। ତାଙ୍କ ନିଜର ଦରକାର ବା କେତେ?

ଟ୍ରେନ୍‌ରେ ବସି ମୁଁ ଖବରକାଗଜ ପଢ଼ିବାକୁ ଚେଷ୍ଟା କରୁଥିଲି, କିନ୍ତୁ ରହି ରହି କରି ନାନୀଙ୍କ କଥା ମନେ ପଡୁଥିଲା। ଭାବିଲି ନାନୀ କଣ ସତରେ ଗ୍ରେରଣୀ ? ତାଙ୍କ ପାଖରେ ଦି'ଖଣ୍ଡ ଧୋତି ଓ ଦି'ଖଣ୍ଡ ଗ୍ଦର ବ୍ୟତୀତ ଆଉ କିଛି ନଥିଲା।



# ଭଗବାନଙ୍କ ପ୍ରିୟ

## [ଲିଓ ଟଲଷ୍ଟୟଙ୍କ ଏକ କାହାଣୀର ପ୍ରେରଣାରେ]

ଉତ୍ତରାଖଣ୍ଡର ବଦ୍ରୀ-କେଦାର ଯାତ୍ରାର ମହତ୍ତ୍ୱ ଆମ ଦେଶର ଜନମାନସରେ ହଜାର ହଜାର ବର୍ଷ ଧରି ରହି ଆସିଛି । ଜନଶ୍ରୁତି ଅଛି ଯେ ପାଣ୍ଡବମାନେ କେଦାରନାଥ ଆସିଥିଲେ । ଖ୍ରୀଷ୍ଟପୂର୍ବ ୧୫୦ ବର୍ଷ ତଳେ ଆଦିଶଙ୍କରାଚାର୍ଯ୍ୟ କେରଳରୁ ଅଢ଼େଇ ହଜାର ମାଇଲ ପଦଯାତ୍ରାରେ ବଦ୍ରୀନାଥ ଆସିଥିଲେ । ବର୍ତ୍ତମାନର ବଦ୍ରୀନାଥ ପୀଠ ତାଙ୍କ ଦ୍ୱାରା ସ୍ଥାପିତ ।

ଅଷ୍ଟାଦଶ ଶତାବ୍ଦୀର କଥା । ପୁନାର ଶ୍ରୀମନ୍ତ ପେଶୱାଙ୍କ ଦେବାନ ରାଜକାର୍ଯ୍ୟରୁ ବିରାମ ନେଇ ଘରେ ବିଶ୍ରାମ କରୁଥିଲେ । ତାଙ୍କ ମନରେ ବହୁତ ବର୍ଷରୁ ବଦ୍ରୀ-କେଦାର ଯାତ୍ରାର ଇଚ୍ଛା ଥିଲା, କିନ୍ତୁ ନାନା କାରଣରୁ ଏପର୍ଯ୍ୟନ୍ତ ଯାଇ ପାରି ନଥିଲେ । ଶେଷରେ ସବୁ ପ୍ରକାର ବନ୍ଦୋବସ୍ତ କରି ତୀର୍ଥଯାତ୍ରାରେ ବାହାରିଲେ । କେଉଁ କେଉଁ ଅମାତ୍ୟ, ଭୃତ୍ୟ, ରୋଷେୟା, ସିପାହୀ ଆଦି ସଂଗରେ ଯିବେ, କେଉଁ ପ୍ରକାର ଯାନବାହନ ଯିବ, ସବୁର ପ୍ରସ୍ତୁତି ଓ ଚିଠା କରାହେଲା । ଖାଦ୍ୟ ସାମଗ୍ରୀର ପରିମାଣ କଳନା କରାଯାଇ ଚିଠା ପ୍ରସ୍ତୁତ ହେଲା । ତାଙ୍କ ପଡ଼ିଶାରେ 'ହୀରୁ' ନାମକ ଦର୍ଜି ରହୁଥିଲା । ତା'ମନରେ ବଦ୍ରୀ-କେଦାର ଯିବାର ଇଚ୍ଛା ଥିଲା, କିନ୍ତୁ ଉତ୍ତମ ସାଥୀ ମିଳୁ ନଥିବାରୁ ଯାଇ ପାରୁ ନଥିଲା ।

ଦେବାନଙ୍କ ସଂଗରେ ଯିବା ପାଇଁ ଅନ୍ୟ କେତେ ଲୋକଙ୍କ ସହ 'ହୀରୁ' ମଧ୍ୟ ଯିବା ପାଇଁ ସ୍ୱୀକୃତି ପାଇଲା । ସେ ସମୟରେ ରାସ୍ତା ସୁଗମ ନଥିଲା । ଚୋର ଡାକୁମାନଙ୍କର ଭୟ ଥିଲା । ଏହାଛଡ଼ା ସାପ, ବିଛା, ଜଙ୍ଗଲୀ ପଶୁଙ୍କ ଆକ୍ରମଣର ଭୟ ଥିଲା । ରାସ୍ତାରେ ବେମାର ପଡ଼ିବାର ଭୟ ମଧ୍ୟ ଥିଲା । ଏହି ସବୁ କାରଣରୁ ଲୋକମାନେ ଏଭଳି ବିଷମ ଯାତ୍ରାରେ ଯିବା ପାଇଁ ବଡ଼ଲୋକଙ୍କର ଦଳରେ ଯିବାର ସୁଯୋଗ ଅପେକ୍ଷାରେ ରହୁଥିଲେ ।

ଦେବାନ ସାହେବ ଯିବାର ବହୁପୂର୍ବରୁ ତାଙ୍କ ପୁଅ ଓ ନାତିମାନଙ୍କୁ କାମ ବିଷୟରେ ଅବଗତ କରାଇ ଦେଇଥିଲେ । ଅଧସ୍ତନ କର୍ମଚାରୀମାନଙ୍କୁ କେଉଁଠାରୁ କେତେ ପରିମାଣ ଆଦାୟ ହୁଏ ବତାଇ ଦେଇଥିଲେ । ଜମିବାଡ଼ିର ପଟାପାଉତି ଓ ସେ ସଂପର୍କରେ କଣ କରିବାକୁ ହେବ ବୁଝାଇ ଦେଇଥିଲେ ।

ଏହାର ଉଦ୍ଦେଶ୍ୟ ଥିଲା ଯେପରି କିଛି କ୍ଷତି ଘଟିବ ନାହିଁ । ହୀରୁ ଯାତ୍ରାରେ ବାହାରିବା ବେଳେ ପତ୍ନୀ ଓ ପୁତ୍ରକୁ କେବଳ ଏତିକି କହିଲା କି ଭଗବାନଙ୍କ ସ୍ମରଣ କରୁଥିବ । ଯଦି ତାଙ୍କର କୃପା ଥିବ, ତେବେ ଆମର ଦେଖା ହେବ ।

ନିର୍ଦ୍ଧାରିତ ଦିନ ଓ ସମୟରେ ଯାତ୍ରୀ ଦଳ ପ୍ରସ୍ଥାନ କଲେ । ଶଂଖ ବଜାଗଲା, ମନ୍ଦିରରେ ଘଣ୍ଟା ବାଜିଲା । ବିଦାୟ ଦେବାକୁ ଲୋକଙ୍କର ଭିଡ଼ ଲାଗିଲା । କୋଶେ ଦୂର ପର୍ଯ୍ୟନ୍ତ ସ୍ତ୍ରୀପୁରୁଷ ଓ ପିଲା ଭଜନ ଗାନ କରି ବାଟେଇ ଦେବାକୁ ସାଂଗରେ ଗ୍ଲିଲେ ।

ତେରଶହ ମାଇଲର ଲମ୍ବା ରାସ୍ତା । ଦୈନିକ ପନ୍ଦର କୋଟିଏ ମାଇଲ ଗ୍ଲନ୍ତି । ରାତିରେ କୌଣସି ଏକ ନିରାପଦ ସ୍ଥାନରେ ରହିଯାଆନ୍ତି । ଭଜନ କୀର୍ତ୍ତନ ଗ୍ଲୁଥାଏ । ଏହିପରି ଯାଉ ଯାଉ ମାଳବାର କେଉଁ ଗୋଟିଏ ଗାଁ ପାଖରେ ରାତ୍ରି ବିଶ୍ରାମ ହେଲା । ଗାଁଟି ନିର୍ଜନ ଲାଗୁଥିଲା । ବୁଝାବୁଝି କରିବାରୁ ଜଣା ପଡ଼ିଲା ଯେ ଗାଁରେ ହଇଜା ଲାଗିଛି, ତେଣୁ ବହୁତ ଲୋକ ଗାଁ ଛାଡ଼ି ଗ୍ଲି ଯାଇଛନ୍ତି । କେବଳ କିଛି ଗରିବ ଲୋକ ଓ ହରିଜନ ଅଛନ୍ତି । ଚିକିତ୍ସା ଅଭାବରୁ ସେମାନଙ୍କ ମଧ୍ୟରୁ ପ୍ରତି ଦିନ ଜଣେ-ଦିଜଣ ମୃତ୍ୟୁମୁଖରେ ପଡୁଥାନ୍ତି ।

ରାତି ହେଲା । ଭଜନ କୀର୍ତ୍ତନ ସମାପ୍ତ ହେଲା । ଯାତ୍ରୀମାନେ ଶୋଇ ପଡ଼ିଲେ । ହୀରୁକୁ ନିଦ ଲାଗୁ ନଥାଏ । ତାକୁ କୌଣସି କାରଣରୁ ଅସ୍ଥିର ଲାଗୁଥାଏ । ସେ ଚୁପଗ୍ପ ଉଠିଲା ଓ ପହରାବାଲାଙ୍କ ନଜର ନ ପଡ଼ିଲା ଭଳି ଧୀରେ ଧୀରେ ଗାଁ ଆଡ଼କୁ ବାହାରିଗଲା । ତାକୁ ହଠାତ୍ ଗୋଟିଏ ଘର ଭିତରୁ ଛୋଟ ପିଲାର କାନ୍ଦ ଶୁଣାଗଲା । ସେଠାରୁ ଦୁର୍ଗନ୍ଧ ମଧ୍ୟ ଆସୁଥିଲା । ଭିତରକୁ ଯାଇ ଦେଖିଲା, ଦୁଇତିନି ବର୍ଷର ବାଳକଟିଏ ମା'କୁ ଲୁଗା ଟାଣି ଟାଣି ଉଠାଉଛି । ମାଆ ତା'ର ହଇଜା ଯୋଗୁଁ ଅପରିଷ୍କାର ହୋଇ ପଡ଼ି ରହି କୁନ୍ଥଉଛି । ହୀରୁ ଆଗରେ ସବୁ କଥା ପରିଷ୍କାର ହୋଇଗଲା । ସେ ଦୌଡ଼ିଯାଇ ଅଗଣାରେ ବନ୍ଧା ହୋଇଥିବା ଛେଳିକୁ ଦୁହିଁ ସେଇ କ୍ଷୀର ବାଳକଟିକୁ ପିଏଇଲା । ତାକୁ ଗୋଟିଏ କଡ଼ରେ ବସାଇ, ସେ ମହିଳାକୁ ଧୋଇ ପୋଛି ପରିଷ୍କାର କଲା । ତା'ର ମନେ ପଡ଼ିଗଲା ଯେ ତା' ବାକ୍ସରେ ଔଷଧ ଅଛି । ସେ ଦୌଡ଼ି ଦୌଡ଼ି ଯାଇ ଯାତ୍ରୀମାନଙ୍କ ବିଶ୍ରାମ ସ୍ଥଳରେ ପହଞ୍ଚିଲା । ବାକ୍ସ ଖୋଲିଲେ ଶବ୍ଦ ହେବ —ଏହା ଭାବି ବାକ୍ସଟିକୁ ଉଠାଇ ନେଲା । ତା' ବିଛଣାରେ ଧୋତି ଓ ଗ୍ଦର ବିଛା ହୋଇଥିଲା । ସେ ଭାବିଲା, ଧୋତି ଓ



ଗ୍ରଦର ଦରକାର ଆସିବ । ଏହା ଭାବି ବାକ୍ସ ଓ ବିଛଣା ଉଭୟ ନେଇ ଗାଁ ଆଡ଼କୁ ଗଲା । ଯାତ୍ରୀମାନେ ଘୋର ନିଦରେ ଶୋଇଥିବାରୁ କେହି କିଛି ଜାଣି ପାରିଲେ ନାହିଁ । ସେ ଗାଁର ସେ ଘରକୁ ଆସି ଦେଖିଲା ଯେ ବାଳକଟି ଆରାମରେ ଶୋଇ ଯାଇଛି ଓ ରୋଗିଣୀର ଅବସ୍ଥା ସାମାନ୍ୟ ଭଲ ଅଛି । ସେ ସଂଗରେ ଆଣିଥିବା ଔଷଧ ରୋଗିଣୀକୁ ଖୁଆଇଲା । ଈଶ୍ୱରଙ୍କ କୃପାରୁ ରୋଗିଣୀକୁ ଔଷଧ କାମ ଦେଲା ।

ସକାଳ ହେବାରୁ ସେ ଅନ୍ୟ ଘରକୁ ଗଲା । ସେଠାରେ ମଧ୍ୟ ହଇଜା ରୋଗୀ ଥିଲେ । ସେ ସେମାନଙ୍କର ସେବାରେ ଲାଗି ପଡ଼ିଲା ।

ଇତି ମଧ୍ୟରେ ତୀର୍ଥଯାତ୍ରୀମାନେ ଯାତ୍ରାରେ ବାହାରିଲେ, କିଛି ସମୟ ହୀରୁକୁ ଅପେକ୍ଷା କଲେ– ତା'ପରେ ଗନ୍ତବ୍ୟ ସ୍ଥଳକୁ ଆଗେଇଲେ ।

ପ୍ରାୟ ମାସେ କାଳ ହୀରୁ ସେ ଗାଁରେ ରହିଥିଲା । ଯାତ୍ରା ପାଇଁ ଯେଉଁ ପଇସା ପତ୍ର ଆଣିଥିଲା ସରିଗଲା । ମହାମାରୀ ଦୂର ହୋଇଥିବା ଖବର ପାଇ ଗାଁରୁ ଗ୍ଲଳିଯାଇଥିବା ଲୋକେ ଫେରି ଆସିଲେ । ସମସ୍ତେ ତା'ପ୍ରତି କୃତଜ୍ଞ ଥିଲେ ଓ ତା'ର ଗୁଣଗାନ କରୁଥିଲେ । ହୀରୁ କିନ୍ତୁ ମୌନ ରହିଥାଏ । ତା' ମନରେ ଏଇ ଭାବନା ଆସୁଥାଏ ଯେ, ତୀର୍ଥଯାତ୍ରା ନ କରି ବୋଧ ହୁଏ ତା'ର ଅପରାଧ ହୋଇଛି ।

ଦିନେ ସେ ତା' ଗାଁକୁ ବାହାରିଲା । ବିଦାୟ ଦେବା ସମୟରେ ଗାଁ

ଲୋକେ ଶ୍ରଦ୍ଧାରେ ଗୁଡ଼, ଚଣା, ଚୁଡ଼ା ନିଜ ଘରୁ ଦେଲେ। ଗାଁର ଶେଷ ମୁଣ୍ଡ ଯାଏ ତାକୁ ବାଟୋଇ ଦେଲେ। ସମସ୍ତଙ୍କ ଆଖିରେ ଲୁହ। ଶ୍ରଦ୍ଧା ଓ ଶୁଭକାମନା ଛଡ଼ା ଗରିବ ଲୋକେ ଆଉ କଣ ବା ଦେଇ ପାରିଥାନ୍ତେ।

କିଛି ଦିନ ପରେ କ୍ଳାନ୍ତ ଶ୍ରାନ୍ତ ହୀରୁ ନିଜ ଗାଁରେ ପହଞ୍ଚିଲା। ଲୋକମାନେ ଆଶ୍ଚର୍ଯ୍ୟ ହେଲେ କି ଯାତ୍ରା ସମାପ୍ତ ନକରି ମଝିରୁ କାହିଁକି ଫେରି ଆସିଲା। ନାନା ରକମର ପ୍ରଶ୍ନ–କାହିଁକି ଆସିଲ? କଣ ଦେହ ଖରାପ ହେଲା କି? କଳିଝଗଡ଼ା ଲାଗିଲା କି? ଇତ୍ୟାଦି। ସେ ଚୁପଚାପ ମୁଣ୍ଡ ତଳକୁ କରି ଶୁଣେ। ସ୍ତ୍ରୀକୁ କେବଳ ଏତିକି କହିଲା ଯେ ତୀର୍ଥଯାତ୍ରାର ପୁଣ୍ୟ ତା' ଭାଗ୍ୟରେ ନଥିଲା।

ପରନିନ୍ଦା ଓ ପରଚର୍ଚ୍ଚା କରିବାରେ ଲୋକମାନଙ୍କୁ ଆନନ୍ଦ ମିଳେ। ନାନାଦି କଥା ବିଚରା ଗରିବ ବିଷୟରେ ପ୍ରଚାର ହେଲା। କିନ୍ତୁ ହୀରୁ ନିଜ ତରଫରୁ କୌଣସି ସଫେଇ ଦେଲା ନାହିଁ। କେବଳ ଏତିକି କହିଲା, ମୋ ଭଳି ପାପୀ ପ୍ରଭୁଙ୍କ ଦରବାରରେ କିପରି ପହଞ୍ଚିଥାନ୍ତା?

ଦୁଇମାସ ପରେ ଦେୱାନଜୀଙ୍କ ଦଳ ପୁନା ଫେରି ଆସିଲେ। ସହରର ଲୋକମାନେ ତାଙ୍କୁ ସ୍ୱାଗତ କରିବାକୁ ଓ ଚରଣଧୂଳି ନେବାକୁ ଆସିଲେ। ହୀରୁ ଧୀରେ ଧୀରେ ଆସି ପାଦଧୂଳି ନେଇ ଗୋଟିଏ କଡ଼ରେ ବସି ରହିଲା। ଦେୱାନଜୀ ତା' ଆଡ଼କୁ ଥରେ ଚାହିଁଲେ, କିନ୍ତୁ କିଛି କହିଲେ ନାହିଁ। ଯାତ୍ରା ନିର୍ବିଘ୍ନରେ ସମାପ୍ତ ହେଲା–ସେହି ଉପଲକ୍ଷେ ତା'ପର ଦିନ ବାରଟି ଗାଁର ଲୋକଙ୍କୁ ପ୍ରସାଦ ବଣ୍ଟନ ସହିତ ଭୋଜି ଦିଆଗଲା। ସମସ୍ତେ ଦେୱାନଜୀଙ୍କ ଯଶୋଗାନ କରୁଥାନ୍ତି।

ଦଶବାର ଦିନ ପରେ ଦେୱାନଜୀଙ୍କ ତରଫରୁ ହୀରୁକୁ ଡକରା ଆସିଲା, ତାକୁ ଲାଗିଲା ଦେୱାନଜୀ ତାକୁ ନିଶ୍ଚୟ ଗାଳିମନ୍ଦ କରିବେ। ଡରି ଡରି ସେ ତାଙ୍କ କୋଠୀରେ ପହଞ୍ଚିଲା ଓ ଦ୍ୱାରପାଳ ହାତରେ ଖବର ପଠାଇଲା।

ଦେୱାନଜୀ ନିଜେ ଆସିଲେ ଓ ହୀରୁକୁ ସାଂଗରେ ନେଇ ତାଙ୍କ ନିଜ କୋଠରୀକୁ ଗଲେ। ଏକାନ୍ତରେ ସେ ହୀରୁକୁ କହିଲେ, "ମୁଁ ଆସିବା ଦିନରୁ ତୁମକୁ ଗୋଟିଏ କଥା ପଚାରିବି ଭାବିଥିଲି, କିନ୍ତୁ ନାନାଦି କାମ ଓ ଲୋକଙ୍କ ଭିଡ଼ ଯୋଗୁଁ ସୁବିଧା ହେଲା ନାହିଁ। ତୁମକୁ ଭଗବାନଙ୍କ ରାଣ –ମିଛ କହିବ ନାହିଁ। ମତେ ଲାଗୁଛି ତୁମେ ସେଦିନ ଆମ ସମସ୍ତଙ୍କୁ ଛାଡ଼ି ଏକା ଏକା ଯାତ୍ରାରେ ଚାଲିଗଲ। ମୁଁ ଦେଖିଲି ଯେ ଭଗବାନ ବଦ୍ରୀନାଥଙ୍କ ଶୃଙ୍ଗାର

(ବେଶ) ତୁମେ କରୁଥିଲ ଆଉ ପ୍ରମୁଖ ପୂଜାରୀ ଆଳତି କରୁଥିଲେ। ମୁଁ ତୁମକୁ ଡାକିଲି, କିନ୍ତୁ ଭିଡ଼ ଭିତରେ ତୁମେ କୁଆଡ଼େ ଚାଲିଗଲ। ଏହାପରେ



କେଦାରନାଥଙ୍କ ଶୃଙ୍ଗାର ଓ ଆଳତି ସମୟରେ ମଧ୍ୟ ମୁଁ ତୁମକୁ ଜଗମୋହନ କକ୍ଷରେ ଦେଖିଲି। ତା' ଭିତରକୁ ତ କେବଳ ପ୍ରମୁଖ ପୂଜାରୀ ହିଁ ଯାଇ ପାରନ୍ତି। ତୁମକୁ ତା' ଭିତରକୁ କିଏ ଯିବାକୁ ଦେଲା? ମୁଁ ଭଗବାନଙ୍କୁ ସୁନା ଗହଣା ତଥା ଜରିଲୁଗା ଭେଟି ପାଇଁ ଦେଇଥିଲି। ମତେ କେବଳ ଚୌକାଠ ପର୍ଯ୍ୟନ୍ତ ଯିବାକୁ ମିଳିଲା।'' ହୀରୁ ଦେୱାନଜୀଙ୍କ ପାଦ ଧରି କାନ୍ଦି କାନ୍ଦି କହିଲା, ''ମହାମାନ୍ୟ! ଏସବୁ ଆପଣ କଣ କହୁଛନ୍ତି? ମୁଁ ତ ସେଇ ଗାଁରେ ରୋଗୀଙ୍କ ସେବା ପାଇଁ କିଛିଦିନ ରହିଗଲି ଓ ତା'ପରେ ମୋ ଗାଁକୁ ଫେରି ଆସିଲି! ମୋର ବଡ଼ ଅପରାଧ ହୋଇଛି ଯେ ମୁଁ ଆପଣଙ୍କୁ ନ ଜଣାଇ ଦଳରୁ ବାହାରି ଯାଇଥିଲି। ଆପଣଙ୍କ ଭଳି ମହାପୁରୁଷଙ୍କ ସଂଗରେ ତୀର୍ଥଯାତ୍ରାର ସୁଯୋଗ ମିଳିଥିଲେ ମଧ୍ୟ ଭଗବାନଙ୍କ ଦର୍ଶନ ଲାଭରୁ ବଂଚିତ ହେଲି।''

ଦେୱାନଜୀ ଏସବୁ କଥାର ସତ୍ୟତା କଳି ପାରୁ ନଥାନ୍ତି। କାନରେ ଶୁଣିବା କଥା ମିଥ୍ୟା ହୋଇ ପାରେ, କିନ୍ତୁ ଆଖିରେ ଦେଖିବା କଥା ମିଥ୍ୟା ହେବ ନାହିଁ। ତାଙ୍କୁ ହୀରୁ ଆଖି ଭିତରେ ବଦ୍ରୀନାଥଙ୍କ ପ୍ରତିମୂର୍ତ୍ତି ଦେଖାଯାଉଥିଲା। ''ଭାଇ, ତୁମେ ପ୍ରକୃତରେ ପ୍ରଭୁଙ୍କର ପ୍ରିୟ'' ଏହା କହି ଗଦ୍‌ଗଦ ହୋଇ ସେ ହୀରୁକୁ କୁଣ୍ଢେଇ ପକେଇଲେ।



# ସମ୍ବନ୍ଧ–ସମସ୍କନ୍ଧଙ୍କ ସହିତ

ମହାଭାରତର ଏକ ଉପାଖ୍ୟାନରେ ଅଛି ଯେ–ଏକଦା ଶିଶୁ ଅଶ୍ୱତ୍ଥାମା କ୍ଷୀର ପିଇବ ବୋଲି ଜିଦ୍ ଧରିଲା । ସେ ସମୟରେ କ୍ଷୀରର ମୂଲ୍ୟ ଅତି କମ୍ ଥିଲେ ମଧ୍ୟ ତାର ମା ନିକଟରେ କ୍ଷୀର କିଣିବାକୁ ଅର୍ଥ ନଥିଲା । ଲୋତକପୂର୍ଣ୍ଣ ଚକ୍ଷୁରେ ତାର ମା ହାଣ୍ଡିରୁ ତୋରାଣି ଆଣି ତାକୁ ପିଇବାକୁ ଦେଲା ଏବଂ ନାନା ପ୍ରକାରରେ ବୁଝା ସୁଝା କଲା । ଯେତେ ବୁଝାଇଲେ ମଧ୍ୟ ସେ କାନ୍ଦି କାନ୍ଦି ଅଥୟ ହେଲା ।

ଦ୍ରୋଣାଚାର୍ଯ୍ୟ ଘରକୁ ଫେରି ଦେଖିଲେ ପୁଅ ରଡ଼ି ଛାଡ଼ିଛି, କଥାଟା ବୁଝିଲା ପରେ ସେ ଅତ୍ୟନ୍ତ ମ୍ରିୟମାଣ ହୋଇ ଦାରିଦ୍ର୍ୟରୁ କିପରି ମୁକ୍ତି ପାଇବେ, ସେଥିପାଇଁ ବ୍ୟାକୁଳ ହୋଇ ପଡ଼ିଲେ ।

ସହପାଠୀ ବନ୍ଧୁ ଦ୍ରୁପଦ ମହାରାଜଙ୍କ କଥା ତାଙ୍କର ମନେ ପଡ଼ିଲା । ତେଣୁ ସେ ଦ୍ରୁପଦ ମହାରାଜଙ୍କ ନିକଟରେ ଯାଇ ପହଞ୍ଚିଲେ ଏବଂ ତାଙ୍କୁ ଗୁରୁକୁଳରେ ଏକାଠି ପଢ଼ିବା ଓ ସାଂଗ ହେବା କଥା କହିଲେ । ରାଜା ଦ୍ରୁପଦ କହିଲେ, ''ହେ ବ୍ରାହ୍ମଣ! ଯଦି ଚାହୁଁଛ, ତେବେ କିଛି ଭିକ୍ଷା ମିଳିପାରେ; ପିଲାଦିନର କଥା କହି ମୋ ସହିତ ବନ୍ଧୁତାର ପରିଭାଷା ବନ୍ଦ କର । ସମ୍ବନ୍ଧ ଏବଂ ମିତ୍ରତା ସମସ୍କନ୍ଧ ବ୍ୟକ୍ତିମାନଙ୍କ ସହିତ ହୋଇଥାଏ ।''

ଏକଥାରେ ଦ୍ରୋଣାଚାର୍ଯ୍ୟ ଅତ୍ୟନ୍ତ ଅପମାନିତ ଏବଂ ଲାଞ୍ଛିତ ହେବାରୁ ତାଙ୍କ ପ୍ରାଣରେ ଦାରୁଣ ବ୍ୟଥା ହେଲା । ସେ ମନମଧ୍ୟରେ ଏକ ସିଦ୍ଧାନ୍ତରେ ଉପନୀତ ହୋଇ ସଂଗେ ସଂଗେ ତାଙ୍କ ପାଖରୁ ଫେରି ସିଧା ହସ୍ତିନାପୁରକୁ ଗଲେ । ଯେହେତୁ ଦ୍ରୋଣାଚାର୍ଯ୍ୟ ଧନୁର୍ବିଦ୍ୟାରେ ନିପୁଣ ଥିଲେ, ତାଙ୍କୁ କୌରବ ଏବଂ ପାଣ୍ଡବ କୁମାରମାନଙ୍କୁ ଶିକ୍ଷା ଦେବା ନିମିତ୍ତ ନିଯୁକ୍ତି ମିଳିଲା । ଦ୍ରୋଣାଚାର୍ଯ୍ୟ ଭୀମ, ଅର୍ଜୁନ, ଦୁର୍ଯ୍ୟୋଧନ ପ୍ରଭୃତିଙ୍କୁ ଖୁବ୍ କମ୍ ସମୟ ମଧ୍ୟରେ ଧନୁର୍ବିଦ୍ୟା ଶିକ୍ଷା ଦାନ କରିବାରୁ ସେମାନେ ପରାକ୍ରମୀ ହୋଇଉଠିଲେ । ଶିକ୍ଷା ସମାପ୍ତ ହେଲା ପରେ ଦ୍ରୋଣାଚାର୍ଯ୍ୟ ଗୁରୁଦକ୍ଷିଣା ନିମିତ୍ତ ସେମାନଙ୍କୁ ଦ୍ରୁପଦ ରାଜାଙ୍କ ସହିତ ଯୁଦ୍ଧ କରି ତାଙ୍କୁ ପରାସ୍ତ କରିବା ପାଇଁ ଆଦେଶ ଦେଲେ । କୁମାରଗଣ

ହର୍ଷୋତ୍‌ଫୁଲ୍ଲ ଚିତ୍ତରେ ଗୁରୁଙ୍କର ଆଜ୍ଞା ଶିରୋଧାର୍ଯ୍ୟ କରି ଦ୍ରୁପଦ ରାଜାଙ୍କ ସହିତ ଯୁଦ୍ଧ କଲେ ଏବଂ ଯୁଦ୍ଧରେ ତାଙ୍କୁ ପରାସ୍ତ କରି ବନ୍ଦୀ କଲେ ।

ବନ୍ଦୀ ଦ୍ରୁପଦ ରାଜାଙ୍କୁ ଧରି ଆଚାର୍ଯ୍ୟଙ୍କ ସମ୍ମୁଖରେ ଯେତେବେଳେ ଶିଷ୍ୟମାନେ ପହଞ୍ଚିଲେ–ଦ୍ରୋଣାଚାର୍ଯ୍ୟ କହିଲେ, "ହେ ରାଜା! ଏବେ କୁହ, ଏବେ ଆମ ମଧ୍ୟରେ ମିତ୍ରତା ହୋଇପାରିବ କି?" ଦ୍ରୁପଦ ଅତ୍ୟନ୍ତ ଲଜ୍ଜିତ ହେଲେ ଏବଂ ନିରୁତ୍ତର ରହିଲେ ।

ଏହି ପ୍ରସଙ୍ଗରେ ଏ ଯୁଗର ଏକ ସତ୍ୟ ଘଟଣା ମନେ ପଡ଼ିଯାଉଛି । କଥାର ବିଷୟବସ୍ତୁ ହେଲା–ଭିୱାନୀର ଏକ ଗରିବ ବୈଶ୍ୟଙ୍କର ପୁତ୍ର ସହିତ କୌଣସି କାରଣରୁ ଏକ ଧନାଢ୍ୟ ବ୍ୟକ୍ତିଙ୍କର ସମ୍ବନ୍ଧ ହୋଇଗଲା । ସେ ଧନାଢ୍ୟ ବ୍ୟକ୍ତି ବୈଶ୍ୟର ପୁତ୍ରକୁ ଅତ୍ୟନ୍ତ ଭଲ ପାଉଥିବାରୁ ତାକୁ ସାଙ୍ଗରେ ଧରି କଲିକତା ନେଇଗଲେ ଓ ତାକୁ ପୋଷ୍ୟପୁତ୍ର ପରି ରଖିଲେ । କିଛି ବର୍ଷପରେ ସେହି ପିଲାର ମାତାପିତାଙ୍କର ଇଚ୍ଛା ହେଲା ଯେ ସେମାନେ ଶ୍ରୀଜଗନ୍ନାଥଧାମ ପୁରୀ ଯିବେ ଏବଂ ଯିବା ସମୟରେ ନିଜ ପୁଅ ଓ ନାତିଙ୍କୁ ମଧ୍ୟ ଦେଖିକରି ଯିବେ ।

ବହୁ କଷ୍ଟ ସ୍ୱୀକାର କରି ସେମାନେ ଯାଇ କଲିକତାରେ ପହଞ୍ଚିଲେ । ନିଜର ସ୍ତ୍ରୀକୁ ସହଯାତ୍ରୀମାନଙ୍କ ସହିତ ଧର୍ମଶାଳାରେ ରଖାଇ ବୃଦ୍ଧ ପିତା ନିଜର ପୁଅକୁ ଦେଖିବାକୁ ବାହାରି ଗଲା । ସେଠାରେ ପହଞ୍ଚି ସେ ଦେଖିଲା ଯେ ତାର ପୁତ୍ର ଏକ ପ୍ରକାଣ୍ଡ ଅଟ୍ଟାଳିକାର କୋଠରୀରେ ଗଦି ଉପରେ ବସିଅଛି । ଏହା ଦେଖି ସେ ଅତ୍ୟନ୍ତ ଉତ୍‌ଫୁଲ୍ଲିତ ହୋଇ ଉଠିଲା ।

ମଇଳା ଛିଣ୍ଡା ଧୋତି, ଦାଢ଼ି ବାଲୁ ବାଲୁ ମୁଖମଣ୍ଡଳ ଏବଂ ଜୀର୍ଣ୍ଣଶୀର୍ଣ୍ଣ ସେହି ବୃଦ୍ଧ ବ୍ୟକ୍ତିଟି ପୁତ୍ର ବସି ତାର ବନ୍ଧୁମାନଙ୍କ ସହିତ ଗପସପ ହେଉଥିବା କୋଠରୀର ଏକ କୋଣରେ ବସିପଡ଼ିଲା । ପୁଅ ଉଠି ତାକୁ ନମସ୍କାର କଲା ନାହିଁ କି ଭଲମନ୍ଦ ପଚାରିଲା ନାହିଁ । ମିତ୍ରମାନେ ଜାଣିବାକୁ ଚାହିଁବାରୁ ତାର ପୁତ୍ର ସେମାନଙ୍କୁ କହିଲା, "ଏ ବୃଦ୍ଧବ୍ୟକ୍ତି ଜଣକ ଆମ ଗ୍ରାମରେ ଜଣେ ପରିଚିତ ଲୋକ ।" ବୃଦ୍ଧ ପିତା ଦୀନଦରିଦ୍ର ଥିଲେ ମଧ୍ୟ ତାର ଆତ୍ମାଭିମାନ ଥିଲା । ପୁଅର କଥାଟା ତାକୁ ଖୁବ୍ ବାଧିଲା । ସେ କହିଲା–"ଶେଠଜୀଙ୍କର ଗ୍ରାମର ଲୋକ ହିସାବରେ ପରିଚୟ ଥିଲେ ବି ସେ ଧନବାନ ଏବଂ ମୁଁ

ଦୀନଦରିଦ୍ର, ତେଣୁ ଶେଠଜୀଙ୍କ ସହିତ ମୋର କି ସମ୍ବନ୍ଧ? ଏଠାକୁ ଆସିବା ମୋର ଏକ ମସ୍ତବଡ଼ ଭୁଲ୍। ଯା ହେଲେ ବି ମୁଁ ଶେଠଜୀର ଜନ୍ମଦାତା। ଯାହେଉ ଭଲ ହେଲା, ତା'ର ମା ଏକଥା ଶୁଣିଲା ନାହିଁ। ତାକୁ ଧର୍ମଶାଳାରେ ଛାଡ଼ିଦେଇ ଆସିଛି।''



ଏପରି ଅପ୍ରତ୍ୟାଶିତ ଏବଂ ଅପ୍ରିୟ ଘଟଣାରେ ଶେଠଜୀଙ୍କର ଗପସପ ବନ୍ଦ ହୋଇଗଲା ଏବଂ ବନ୍ଧୁମାନେ ଚ୍ୱଲିଗଲେ। ବୃଦ୍ଧ ପିତା ତ ସେମାନେ ଯିବା ପୂର୍ବରୁ ଘରୁ ବାହାରି ଯାଇଥିଲା।

କଲିକତା ଆସିବା ପରଠାରୁ ଶେଠ ଯୁବକ ତାର ପିତାମାତାଙ୍କର ଖୋଜ ଖବର ରଖି ନଥିଲା। ତାର ଦର୍ପ-ଅହଂକାର ବହୁମାତ୍ରାରେ ବଢ଼ିଯାଇଥିଲା। କିନ୍ତୁ ତାର ଗୁମାସ୍ତା ତଥା ଅନ୍ୟମାନଙ୍କ ସାମନାରେ ଉକ୍ତ ଘଟଣାରେ ସେ ଅତ୍ୟନ୍ତ ଲଜ୍ଜିତ ହୋଇ ଯାଇଥିଲା। ତେଣୁ ସେ ଏକ ଘୋଡ଼ାଗାଡ଼ିରେ ତାର ସ୍ତ୍ରୀକୁ ଧରି ସନ୍ଧ୍ୟାସମୟରେ ତାର ପିତାମାତା ଯେଉଁ ଧର୍ମଶାଳାରେ ରହୁଥିଲେ, ସେଠାକୁ ଗଲା। ମାତ୍ର ସେଠାରେ ପହଞ୍ଚିବା ପରେ ଜାଣିବାକୁ ପାଇଲା ଯେ ସେମାନେ ପୁରୀ ଅଭିମୁଖେ ଯାତ୍ରା କରି ସାରିଛନ୍ତି।

ଧନ ଦୌଲତ କ୍ଷଣସ୍ଥାୟୀ। ଘଟଣା ଚକ୍ରରେ ତାର ସମସ୍ତ ସମ୍ପତ୍ତି ଉଜୁଡ଼ି ଗଲା। ମାତ୍ର ଇତିମଧ୍ୟରେ ତାର ଭାଇମାନେ ବ୍ୟବସାୟ କରି

ସମ୍ପତ୍ତିବାନ୍ ହୋଇଯାଇଥିଲେ । ବଡ଼ପୁଅର ଦାରିଦ୍ର୍ୟ ଖବର ପାଇ ତାର ମାଆ ବଡ଼ ଦୁଃଖୀ ହୋଇଗଲା । ଜିଦ୍ କରି ନିଜର ସ୍ୱାମୀକୁ ଧରି କଲିକତା ଗଲା । ଖବର ପାଇ ବଡ଼ପୁଅ ବାପ-ମା'ଙ୍କୁ ସାକ୍ଷାତ୍ କରି ତାଙ୍କ ପାଦତଳେ ଲୋଟିପଡ଼ିଲା ଏବଂ ତାଙ୍କ ପ୍ରତି କରିଥିବା ଦୁର୍ବ୍ୟବହାର ନିମନ୍ତେ କ୍ଷମା ମାଗିଲା । ତାର ବାପା କହିଲେ, "ଏବେ ମୋତେ ଚିହ୍ନିଲୁ?" ଏତିକି କହି ତାର ବାପା ମୁହଁ ବୁଲାଇ ବସିରହିଲା । କୋଡ଼ିଏ ବର୍ଷ ତଳେ ତାର ପିତାମାତା ପୁଅର ଭବିଷ୍ୟତ ଚିନ୍ତା କରି କଲିକତା ପଠାଇଥିଲେ । ପୁତ୍ର କୁପୁତ୍ର ହେଲେ ବି ମାତା କୁମାତା ହୋଇ ନଥାଏ । ତାର ମାଆ ପୁଅକୁ କୁଣ୍ଢାଇ ଅଶ୍ରୁବର୍ଷଣ କରି କହିଲା–"ଭଗବାନଙ୍କ କୃପାରୁ ତୋର ଭାଇମାନଙ୍କର ବହୁତ ଧନରତ୍ନ ଅଛି । ତେଣୁ ବଡ଼ ଛୋଟ ବିଗ୍ରହ ନକରି ମିଳିମିଶି ବେପାର ସମ୍ଭାଳ ।" ଏହା କହି ନାତି ଦୁଇଜଣଙ୍କୁ କାଖ କରି ଘରୁ ବାହାରି ଆସିଲା ।



# ଯିଏ ଥଣ୍ଟ ଦେଇଛି, ସେ ଦାନା ଦେବ

ରାଜସ୍ଥାନର ଏକ ସହରରେ ଜଣେ କୋଟିପତି ଶେଠ୍ ଥିଲେ । ତାଙ୍କର ସବୁଦିଗରୁ ପୂର୍ଣ୍ଣ ପରିବାର, ସୁନ୍ଦରୀ ପତିପରାୟଣା ପତ୍ନୀ ଓ ଦୁଇଜଣ ଆଜ୍ଞାକାରୀ ସୁସ୍ଥ ପୁତ୍ର ଥିଲେ । ବେପାରର ଲାଭ ଓ ସୁଧ ସଂଗ୍ରହରୁ ତାଙ୍କର ସଂପତ୍ତି ପ୍ରତିବର୍ଷ ବଢୁଥିଲା । ସେମାନଙ୍କର ଆଡ଼ମ୍ବରଶୂନ୍ୟ ଜୀବନଚର୍ଯ୍ୟା ଓ ଖର୍ଚ୍ଚରେ ମିତବ୍ୟୟିତା ଥିଲା । ବର୍ଷ ଶେଷରେ ଶେଠ୍ ଆୟ-ବ୍ୟୟର ହିସାବ କରି ଦେଖୁଥିଲେ ଯେ, ଧନ ଗତବର୍ଷ ଅପେକ୍ଷା ଏବର୍ଷ କେତେ ବୃଦ୍ଧି ହୋଇଛି ଓ ଖର୍ଚ୍ଚ କେତେ ହୋଇଛି ।

ଦିନେ ଜଣେ ପ୍ରସିଦ୍ଧ ଜ୍ୟୋତିର୍ବିଦ୍ ବିଦ୍ୱାନ ମହାତ୍ମା ସହରକୁ ଆସିଲେ । ଶେଠ୍ ପୂର୍ବରୁ ତାଙ୍କର ପ୍ରସିଦ୍ଧି ଶୁଣିଥିଲେ । ବହୁତ ଆଦର ସତ୍କାର ସହ ତାଙ୍କୁ ଘରକୁ ଆଣିଲେ । ତାଙ୍କୁ ସେବା ଯତ୍ନ କରି ପ୍ରସନ୍ନ କରିଦେଲେ । ମହାତ୍ମା ତାଙ୍କର ଜନ୍ମପତ୍ରିକା ଦେଖିଲେ । କହିଲେ, "ବୃହସ୍ପତି ଉଚ୍ଚରେ ଅଛନ୍ତି, ସବୁପ୍ରକାର ସୁଖସୁବିଧା ଜୀବନସାରା ମିଳିବ । ବହୁତ ଯଶର ଅଧିକାରୀ ହେବେ । ଆପଣ ସାଧୁ, ମହାତ୍ମା ଓ ଦୀନଦୁଃଖୀଙ୍କୁ ପ୍ରତିଦିନ ଅନ୍ନ ବା ଚାଉଳ ଦାନ କରନ୍ତୁ । ଆପଣଙ୍କ ବଂଶରେ ପାଂଚ ପୁରୁଷ ଯାଏଁ ଧନ, ବୈଭବ ଓ ଯଶ ଅକ୍ଷୁଣ୍ଣ ରହିବ ।"

ସାଧୁ ମହାତ୍ମା ଏସବୁ କହି ଚାଲିଗଲେ । ଶେଠ୍ ତାଙ୍କ ନିର୍ଦ୍ଦେଶ ଅନୁସାରେ ପରଦିନ ଠାରୁ ଦାନ କରିବାରେ ଲାଗିଲେ । ପରନ୍ତୁ ତାଙ୍କ ମନରେ ଗୋଟିଏ ଚିନ୍ତା ରହିଲା ଯେ ମୋର ଷଷ୍ଠ ପୁରୁଷ କିପରି ଚଳିବ? ତାହାପାଇଁ କଣ କରାଯିବ? ତା'ର ଅବସ୍ଥା କିପରି ରହିବ? ଇତ୍ୟାଦି ।

ଶେଠାଣୀ, ମୁନିମ ଓ ଗୁମାସ୍ତାମାନେ ବହୁତ ବୁଝାଇଲେ କି ଏବେଠାରୁ ଛ' ପୁରୁଷର କଥା କାହିଁକି ଚିନ୍ତା? ଏତେ ସମ୍ପତ୍ତି, ଭଲ ଚାଲୁଥିବା ବ୍ୟବସାୟ, ପାଞ୍ଚପୁରୁଷ ଯାଏଁ ତ ଚାଲିବ । ତା'ପର ପୁରୁଷରେ ନିଶ୍ଚୟ କେହି ସମର୍ଥ

ବ୍ୟକ୍ତି ବାହରିବ, ସେ ନିଶ୍ଚୟ ସବୁକିଛି ସମ୍ଭାଳିନେବ । ମାତ୍ର ଯେତେ ବୁଝାଇଲେ ମଧ୍ୟ ଶେଠ୍‌ଜୀଙ୍କ ମନ ମାନିଲା ନାହିଁ । ସେ ଚିନ୍ତାରେ ଦୁର୍ବଳ ହୋଇ ପଡ଼ିଲେ ଓ ଦେହ ଖରାପ ମଧ୍ୟ ହେଲା ।

ଦିନେ ଚାଉଳ ବିତରଣ ପାଇଁ ନିଜ କୋଠାର ବାରଣ୍ଡାରେ ବସିଥିଲେ । ଜଣେ ଗରିବ ବ୍ରାହ୍ମଣ ଭଗବତ୍ ଭଜନ କରି କରି ଆଗରେ ଗଲେ । ଶେଠ୍ ତାଙ୍କୁ ଡାକିଲେ–"ମହାରାଜ୍, ଚାଉଳ ଦାନ କରୁଛି । ନେଇ ଯାଆନ୍ତୁ ।" ସେ ବିନୟ ସହିତ କହିଲେ, "ଏ ଓଳି ପାଇଁ ମତେ ଯଥେଷ୍ଟ ଚାଉଳ ମିଳିଯାଇଛି । ସଂଧ୍ୟାବେଳ ପାଇଁ ନିଶ୍ଚୟ କେହି ଦାତା ଘରକୁ ସଂଗ୍ର ପଠେଇ ଦେଇଥିବେ । ଯଦି ନ ଆସିଥିବ, ମୁଁ ପଗ୍ରି ଆପଣଙ୍କୁ ଜଣାଇବି ।"



କିଛି ସମୟପରେ ବ୍ରାହ୍ମଣ ଫେରି ଆସି କହିଲେ, "ଘରେ ସଂଗ୍ର ପହଞ୍ଚି ଯାଇଛି । ତେଣୁ ଆଜି ପାଇଁ ଆଉ ଦରକାର ନାହିଁ ।"

ଶେଠ୍‌ଜୀ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । କହିଲେ, "ମହାରାଜ, ଆପଣଙ୍କ ପରି ସାତ୍ତ୍ୱିକ ବ୍ରାହ୍ମଣଙ୍କର କିଛି ସେବା ମୁଁ କରିବାକୁ ଚାହୁଁଛି । ଗୋଟିଏ ବସ୍ତା ଚାଉଳ ମୋ ଲୋକମାନଙ୍କ ଦ୍ୱାରା ଆପଣଙ୍କ ଘରକୁ ପଠାଇଦେବି, ଯାହା ଫଳରେ ଆପଣଙ୍କର ଅନେକ ଦିନ ଚଳିଯିବ ।"

ବ୍ରାହ୍ମଣ ସରଳ ଭାବରେ କହିଲେ, "ହେ ଦୟାଳୁ ଶେଠ୍, ଶାସ୍ତ୍ରରେ ଲେଖାଅଛି ଲୋଭ ପାପର ମୂଳ। ବିଶେଷତଃ ଆମ ବ୍ରାହ୍ମଣମାନଙ୍କ ପାଇଁ। ଆପଣ ଅନ୍ୟ କୌଣସି ଅଭାବଗ୍ରସ୍ତ ଲୋକକୁ ଏହି ଗ୍ୱଉଳ ଦେଇଦିଅନ୍ତୁ। ଦୟାଳୁ ଭଗବାନ ଆମ ପାଇଁ ଆଜିର ବନ୍ଦୋବସ୍ତ କରି ଦେଇଛନ୍ତି। ଆସନ୍ତା କାଲିପାଇଁ ସେ ନିଜେ ଯୋଗାଡ଼ କରିଦେବେ। ଯିଏ ଥଣ୍ଟ ଦେଇଛି, ସେ ଦାନା ମଧ୍ୟ ଦେବ।"

ଶେଠ୍‌ଜୀ ସେହି ଗରିବ ବ୍ରାହ୍ମଣର କଥା ଶୁଣୁଥିଲେ। ମନକୁ ମନ ବିସ୍ମିତ ହେଉଥିଲେ। ଭାବୁଥିଲେ, ଏହାଙ୍କର ଆସନ୍ତା କାଲି ପାଇଁ ଚିନ୍ତା ନାହିଁ। ଯାହା ସୁବିଧାରେ ମିଳିଯାଉଛି, ତାକୁ ବି ନେଉ ନାହାନ୍ତି; ଅଥଚ ମୁଁ ଏପରି ଜଣେ ଯିଏ ଆଗାମୀ ଛ'ପୁରୁଷ କଥା ଚିନ୍ତା କରୁଛି ଓ ଘାରି ହେଉଛି!

ତା'ପର ଦିନ ଠାରୁ ସେ ପ୍ରସନ୍ନ ଦେଖାଗଲେ। ଦାନ ଧର୍ମର ମାତ୍ରା ବଢ଼େଇଦେଲେ। ତାଙ୍କ ଚେହେରାରେ ଶାନ୍ତିର ଆଭା ଦେଖିବାକୁ ମିଳିଲା।



# ଆତ୍ମୀୟତା

କଥାଟା ପୁରୁଣା ହେଲେ ବି ପୁରୁଣା ନୁହେଁ, କାରଣ ୪୦/୫୦ ବର୍ଷ ପୂର୍ବେ ଜଣେ ଏପରି ମଣିଷ ଥିଲେ ଯିଏ କି ଜଣେ ଶେଠଙ୍କୁ ଜାଣିଥିଲେ। ଶେଠଜୀଙ୍କର ଘର ରାଜସ୍ଥାନର ଶେଖାବାଟି ଅଞ୍ଚଳରେ ଥିଲେ ମଧ୍ୟ ସେ ପ୍ରାୟତଃ ମୁମ୍ବାଇରେ ରହୁଥିଲେ, ତାଙ୍କର ସେଠାରେ ଖୁବ୍ ବଡ଼ ବ୍ୟବସାୟ ଥିଲା।

ସେ ବର୍ଷରେ ଥରେ ତାଙ୍କର ଗ୍ରାମକୁ ଆସୁଥିଲେ। ସେ ନିଜର ଗ୍ରାମକୁ ଆସିବାର ଖବର ମିଳିଲେ ଶହ ଶହ ଲୋକ ଆଖପାଖ ଅଞ୍ଚଳରୁ ତାଙ୍କ ନିକଟକୁ ଆସୁଥିଲେ। ଶେଠଜୀ ଛୋଟ ବଡ଼ ସବୁ ଲୋକଙ୍କର ନାମ ଜାଣିଥିବାରୁ ସମସ୍ତଙ୍କୁ ତାଙ୍କର ସୁଖଦୁଃଖ କଥା ପଗ୍ଚରି ବୁଝୁଥିଲେ। ଏପରି ବ୍ୟବହାରରେ ଲୋକମାନେ ଅତ୍ୟନ୍ତ ଉଲ୍ଲସିତ ହେଉଥିଲେ ଏବଂ ନିଜକୁ ଭାଗ୍ୟବାନ୍ ଭାବୁଥିଲେ।

ସେ ଯେତେଦିନ ଗ୍ରାମରେ ରହୁଥିଲେ, ସବୁଦିନ ଲୋକମାନଙ୍କୁ ଡାକି ହନୁମାନ ତଥା ସତ୍ୟନାରାୟଣଙ୍କ ପୂଜାରେ ଅର୍ପିତ ଭୋଗରାଗ ପରଷୁଥିଲେ। ବ୍ରାହ୍ମଣମାନଙ୍କୁ ଘରପିଛା ଖଣ୍ଡେ ଲେଖାଏଁ ଧୋତି ଏବଂ ଏକଟଙ୍କା କରି ଦାନ କରୁଥିଲେ। ସେମାନଙ୍କର ସ୍ତ୍ରୀମାନଙ୍କ ପାଇଁ ଶାଢୀ ମଧ୍ୟ ଦେଉଥିଲେ। ଯଦିଓ ସେ ଅତ୍ୟନ୍ତ ଧନବାନ ନଥିଲେ, ତଥାପି ତାଙ୍କର ମନ ବହୁତ ଉଚ୍ଚ ଥିଲା। ତାଙ୍କର ଯାହା ଆୟ ହେଉଥିଲା, ସେ ଆୟର ଅଧିକାଂଶ ଅର୍ଥ ଦାନ ଖଇରାତରେ ବିତରଣ ହେଉଥିଲା।

ଶେଠଜୀଙ୍କର ଏକମାତ୍ର ପୁତ୍ରର ବିଭାଘର ଶେଖାବାଟି ନିକଟସ୍ଥ ଏକ ଗ୍ରାମରେ ଠିକ୍ ହେଲା। ସେତେବେଳେ କାର୍ଡ଼ ଛପାଇ ଲୋକମାନଙ୍କୁ ନିମନ୍ତ୍ରଣ ଦେବାର ପ୍ରଥା ନଥିଲା। ତେଣୁ ଶେଠଜୀ ବାରିକ ବା ବ୍ରାହ୍ମଣଙ୍କ ଦ୍ୱାରା ନିମନ୍ତ୍ରଣ ଦେଲେ ଏବଂ ନିଜର ଭାଇଆମାନଙ୍କୁ ସ୍ୱୟଂ ନିଜେ ଆମନ୍ତ୍ରିତ କରିବାକୁ ଗଲେ। ଏମିତି ସର୍ବଦା ତାଙ୍କ ସହିତ ୫/୧୦ ଜଣ ରହୁଥିଲେ।

ଶେଠଜୀଙ୍କର ଭାଇଆରେ ଜଣେ ଗରିବ ଲୋକର ଗୋଟିଏ ଛୋଟିଆ

ଦୋକାନ ଥିଲା। ସେ ଚଣା, ମୁଢ଼ି, ଇତ୍ୟାଦି ବିକ୍ରି କରିଥାଏ। ଶେଠ୍‌ଜୀ ତା ଘରକୁ ଯାଇ ତା ଦୋକାନ ଆଗରେ ପଡ଼ିଥିବା ଏକ ପୁରୁଣା ଦଉଡ଼ିଆ ଖଟ ଉପରେ ବସିପଡ଼ି ନିଜ ପୁଅର ବିଭାଘର ନିମନ୍ତ୍ରଣ କଥା ଉକ୍ତ ଦୋକାନୀକୁ ମନେ ପକାଇ ଦେଲେ ମଧ୍ୟ ଉକ୍ତ ଦୋକାନୀ କିଛି ନକହି ଚୁପ୍ ରହିଲା। ସେ ହଠାତ୍ ବୁଝି ପାରିଲା ନାହିଁ ଯେ ଏତେ ବଡ଼ ଶେଠ ତା'ପରି ଗରିବ ଘରକୁ ଆସି ଏମିତି ବସିପଡ଼ି କଥାଭାଷା ହେଉଛନ୍ତି କିପରି। ସେ ହତବାକ୍ ହୋଇଯାଇଥିଲା। ଶେଠ୍‌ଜୀ ତାର ମନକଥା ବୁଝିପାରି ତାକୁ କହିଲେ– ''ଆରେ ଭାଇ, ଅନେକ ବେଳୁ ଘରୁ ଆସିଲିଣି। ଶୋଷ ହେଉଛି, ମୋତେ ପାଣିଗ୍ଲାସଟେ ଦିଅ।'' ତାଙ୍କ କଥା ଶୁଣି ସେ ପାଣି ଗ୍ଲାସଟିଏ ଧରି ଆସିଲା। ଶେଠ କହିଲେ–''ହେ ଭାଇ! ତମେ ତ ଜାଣିଛ, ଖାଲିପେଟରେ ପାଣି ପିଇଲେ ବାୟୁ ହେବ। ତେଣୁ ଗୁଡ଼ ଟିକିଏ ଏବଂ ଚଣା ମୁଠିଏ ଦେଲେ ଖାଇସାରି ପାଣି ପିଇବି।'' ସେ ଦୋକାନୀ ଗୁଡ଼-ଚଣା ଦେବାରୁ ଶେଠଜୀ ପରମ ସନ୍ତୋଷରେ ତାକୁ ଖାଇସାରି ପାଣି ପିଇଲେ।



ପାଖରେ ଥିବା ଲୋକମାନେ ଦେଖିଲେ ଯେ ଗରିବ ଦୋକାନୀର ଆନନ୍ଦାଶ୍ରୁ ନିର୍ଗତ ହେଉଛି। ଏତେ ବଡ଼ ଲୋକ ହୋଇ ଏପରି ଗରିବ

ଲୋକ ଠାରୁ ଚଣା-ଗୁଡ଼ ଖାଇବା ଅତ୍ୟନ୍ତ ଆଶ୍ଚର୍ଯ୍ୟର ବିଷୟ ଥିଲା । ଦୋକାନୀଟି ହାତ ଯୋଡ଼ି କହିଲା, "ହେ ପରମ ପୂଜନୀୟ ମହାଶୟ! ମୋର ଧାରଣା ଥିଲା, ଆପଣ ମୋ ନିକଟକୁ ନିମନ୍ତ୍ରଣ କରିବାକୁ ଆସିବେ ନାହିଁ । ମୋର ଧାରଣା ଭୁଲ ହେଲା ଏବଂ ଏଥିନିମନ୍ତେ ମୁଁ ଲଜ୍ଜିତ । ତେଣୁ ଆପଣ ମୋତେ କ୍ଷମା କରନ୍ତୁ । ଆମେ ସପରିବାର ଆପଣଙ୍କ ଘରକୁ ଭୋଜନ କରିବାକୁ ନିଶ୍ଚୟ ଯିବୁ ।"

ଲୋକେ କହନ୍ତି, ଶେଠ ମହାଶୟଙ୍କ ପୁଅ ବିଭାଘର ଉପଲକ୍ଷେ ତାଙ୍କ ଘରେ ଲଗାତର ୪/୫ ଦିନ ପର୍ଯ୍ୟନ୍ତ ଭୋଜିଭାତ ଚାଲିଥିଲା ଏବଂ ଆଖପାଖ ଗାଁରୁ ଏକହଜାରରୁ ଊର୍ଦ୍ଧ୍ୱ ବ୍ୟକ୍ତି ଭୋଜନ କରିବାକୁ ଆସିଥିଲେ ।

ବିଭାଘର କାମରେ ବ୍ୟସ୍ତରେ ଥାଇ ମଧ୍ୟ ଶେଠ ମହାଶୟଙ୍କର ସବୁ ଆଡ଼େ ନଜର ଥିଲା । ତାଙ୍କ ଆଖିରେ ପଡ଼ିଲା ଯେ ତାଙ୍କ ଘରକୁ ଭୁରି ବୋଲି ଯେଉଁ ମେହନ୍ତରାଣୀ ଆସୁଥିଲା ତା ବଦଳରେ ଆଉ ଜଣେ ଆସିଛି । ଶେଠ ମହାଶୟ ତାକୁ ଡାକି ପଚାରିବାରୁ ସେ କହିଲା, "ଆପଣଙ୍କ ଘରକୁ ଯେଉଁ ଭୁରୀ ଆସୁଥିଲା, ମୁଁ ତାର ଝିଅ ବିଭାଘର ପାଇଁ ଶହେ ଟଙ୍କା ଉଧାର ଦେଇଥିଲି; ତେଣୁ ତା କାମ ମୁଁ ଆପଣଙ୍କ ଘରେ କରୁଛି ।" ଏକଥା ଶୁଣି ଶେଠ ମହାଶୟ କ୍ରୋଧିତ ହୋଇ ଭୁରୀକୁ ଡକାଇ ପଠାଇଲେ ଏବଂ ତାକୁ କହିଲେ, "ହେ ଭୁରୀ ମାଉସୀ! ତୋଠାରୁ ଖବର ମିଳିଥିଲେ ମୁଁ ତ ଟଙ୍କା ପଠାଇ ଦେଇ ଥାଆନ୍ତି, ମାତ୍ର ମୋତେ ଖବର ନଦେଇ ଏପରି କାମ କଲୁ କାହିଁକି?" ଭୁରୀ ହଡ଼ବଡ଼େଇ ହୋଇ କହିଲା, "ମୋର ପ୍ରଥମ ତିନିଟି ଝିଅର ବିଭାଘର ଆପଣଙ୍କ ଦ୍ୱାରା ପଠାଯାଇଥିବା ଟଙ୍କାରେ ହୋଇଥିଲା । ଏ ଯେଉଁ ଝିଅ ବିଭାଘର କଲି ତାର ବିଭାଘର ହଠାତ୍ ଠିକ୍ ହୋଇଯିବାରୁ ଏବଂ ବରପାତ୍ର ଭଲ ଥିବାରୁ ଜୀବଣୀ ଠାରୁ ଶହେଟଙ୍କା ଉଧାର କରି ସାନଝିଅ ଧାପିର ବାହାଘର କରିଦେଇଥିଲି । ଛ ମାସ ସେ ମୋ କାମ କରିସାରିଲା ପରେ ମୁଁ ପୁଣି ଆପଣଙ୍କ ଘରକୁ ଆସିବି । ମୁଁ ଆପଣ ଘରେ କରୁଥିବା କାମ ତାପାଖରେ ଛ ମାସ ପାଇଁ ବନ୍ଧା ପକାଇଛି ।"

ଏ ଯେଉଁ କଥୋପକଥନ ହେଲା, ତାହାକୁ ସେତେବେଳେ ଶେଠଙ୍କର ବମ୍ବେରୁ ଆସିଥିବା ୮/୧୦ ଜଣ ବନ୍ଧୁ ଶୁଣୁଥିଲେ । ସେମାନେ ଶେଠଙ୍କର

ଜଣେ ମେହନ୍ତରାଣୀ ପ୍ରତି ବ୍ୟବହାରରେ ମୁଗ୍ଧ ହୋଇଯାଇଥିଲେ ।

ଗୋଟିଏ ସାମାନ୍ୟ ଦରିଦ୍ର ମେହନ୍ତରାଣୀକୁ ଏତେ ବଡ଼ ଲୋକ ମାଉସୀ ବୋଲି ସମ୍ବୋଧନ କରିବା ଉପସ୍ଥିତ ଭଦ୍ରବ୍ୟକ୍ତିମାନଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଦେଇଥିଲା । ଭୁରୀର ପରଲୋକଗତ ସ୍ୱାମୀକୁ ମଧ୍ୟ ଶେଠଜୀ ମଉସା ବୋଲି ସମ୍ବୋଧନ କରୁଥିଲେ ।

ଶେଠଜୀ ଜୀବଣୀକୁ କହିଲେ– ତୁ ମୋ ପାଖରୁ ଟଙ୍କା ନେଇ ଭୁରୀକୁ କାମରେ ଆସିବା ପାଇଁ ରାଜି ହୋଇଯା' । ଜୀବଣୀ କହିଲା– ମୁଁ କଦାପି କାମ ଛାଡ଼ି ଯିବି ନାହିଁ । ଅନ୍ତତଃ ବିଭାଘର କାର୍ଯ୍ୟ ସରିବା ପର୍ଯ୍ୟନ୍ତ । ଶେଠଜୀ ତାକୁ ବହୁତ ବୁଝାଇ-ସୁଝାଇ ଦୁଇଶହ ଟଙ୍କା ଦେଇ ରାଜି କରାଇଥିଲେ ।

ଆଜିକାଲି ଏପରି କଥା କପୋଳକଳ୍ପିତ ବୋଲି ମନେ ହେଲେ ବି ପୂର୍ବକାଳେ ଛୁଆଁ-ଅଛୁଆଁ ଭାବ ଥାଇ ମଧ୍ୟ ଲୋକମାନଙ୍କ ମନରେ ପରସ୍ପର ପ୍ରତି ଶ୍ରଦ୍ଧାଭାବ ଭରି ରହିଥିଲା । ପରସ୍ପର ସୁଖଦୁଃଖରେ ଭାଗୀଦାର ଥିଲେ ।

ଅଛବ ଲୋକମାନଙ୍କୁ ଧନୀଲୋକମାନେ ମଉସା-ମାଉସୀ, ଅଜା-ମାମୁ ଆଦି ସମ୍ବୋଧନ କରୁଥିଲେ ।



# କେତେ ଜମି - କେତେ ଧନ?

[ ମୂଳ ଗଳ୍ପ ଲିଓ ଟଲ୍‌ଷ୍ଟୟ (ଋଷିଆ) ଙ୍କର ଅନୁସରଣରେ ]

ରାଜସ୍ଥାନର ଏକ ଗ୍ରାମରେ ଗୋଟିଏ ସୁଖୀ କୃଷକ ପରିବାର ବାସ କରୁଥିଲେ। ସ୍ୱାମୀ-ସ୍ତ୍ରୀ, ଗୋଟିଏ ପୁଅ, ବେଶ୍ ଚାଷଜମି; ଦୁଇଥର ବର୍ଷରେ ଫସଲ ହୁଏ। ରହିବା ପାଇଁ ଏକ ଛୋଟ ଭଲ ଘର। ଖୁବ୍ ପରିଶ୍ରମ କରି ନିଜର ଗୁଜୁରାଣ ମେଣ୍ଟାଇବାରେ କିଛି ଅସୁବିଧା ନଥାଏ। ଘରର ଖର୍ଚ୍ଚ ସରି ଯଦି କିଛି ବଳକା ହୁଏ, ସେ ବଳକା ଅର୍ଥକୁ ପଡ଼ୋଶୀ, ଅତିଥି ଓ ସାଧୁସନ୍ଥଙ୍କ ସେବାରେ ଲଗାଯାଇଥାଏ।

ଦିନେ ଗୋଟିଏ ବ୍ୟବସାୟୀ ସହରରୁ ଆସି ଉପରୋକ୍ତ କୃଷକଙ୍କ ଘରେ ରହିଲା। ତା'ର ପିଲାମାନେ ଝିଲିମିଲି ବସ୍ତ୍ର ପରିଧାନ କରିଥିଲେ। ତାର ସ୍ତ୍ରୀ ବହୁତ ଅଳଙ୍କାର ପିନ୍ଧିଥିଲେ। କୃଷକର ସ୍ତ୍ରୀ ପଚାରିବାରୁ ଅତିଥିଙ୍କର ସ୍ତ୍ରୀ କହିଲା, ସେ ଯେଉଁ ଗହଣା ପିନ୍ଧିଛନ୍ତି ତାହା ଅସଲି ସୁନା ଏବଂ ସେ ସବୁଥିରେ ହୀରା ଖଞ୍ଜା ଯାଇଅଛି। ଏକଥା କହି ସେ କହିଲା, ବଡ଼ଲୋକଙ୍କ ଠାରେ ଏସବୁ ଶୋଭା ପାଇଥାଏ।

ଦୁଇ-ତିନି ଦିନ ରହି ସେମାନେ ଚାଲିଗଲେ ମଧ୍ୟ କୃଷକଙ୍କର ସ୍ତ୍ରୀଙ୍କ ମନରେ ଏକ ଅଭିଳାଷ ଛାଡ଼ିଦେଇ ଗଲେ। ସେ ସର୍ବଦା ଅତିଥିଙ୍କର ସ୍ତ୍ରୀର ଗହଣା-ଗାଣ୍ଠି ବିଷୟରେ ଘାରି ହେଲା। ଶୋଇଲା ପରେ ବି ସେ ସ୍ୱପ୍ନରେ ଗହଣା ସବୁ ଦେଖିଲା। କୃଷକର ପିଲାମାନେ ମଧ୍ୟ ଭଲ ପୋଷାକ ପିନ୍ଧିବା ପାଇଁ ବାରମ୍ବାର ଅଳି କରୁଥିଲେ। କୃଷକର ସ୍ତ୍ରୀ ବାରମ୍ବାର କହିବାରୁ କିଛି ଦିନ ପରେ ସେ ଗ୍ରାମରେ ଥିବା ଜମିଦାର ନିକଟକୁ ଯାଇ ତାଙ୍କ ଠାରୁ ଉଧାରରେ ପଚାଶ ବିଘା ଜମି କିଣିଲା। ପତିପତ୍ନୀ ମିଶି ଅଜସ୍ର ପରିଶ୍ରମ କଲେ ଏବଂ ଯୋଗକୁ ଭଲ ପାଣିପାଗ ହେବାରୁ କୃଷକର ଭାଗ୍ୟରେ ବହୁତ ପରିବର୍ତ୍ତନ ହେଲା। ତାର ବେଶ୍ କିଛି ଆୟ ହେବାରୁ ସେ ଜମିଦାରର ଟଙ୍କା ଶୁଝିଦେଲା। ତାପରେ ପୁଣି ଶହେ ବିଘା ଜମି କିଣିଲା। ତାର ଜମିର ପରିମାଣ ଦୁଇଶହ ବିଘା ହୋଇଗଲା। ସେ ଏକପ୍ରକାର ଧନୀ ବ୍ୟକ୍ତିରୂପେ ପରିଗଣିତ ହେଲା। ତାକୁ ଲୋକମାନେ ପର୍ଶୁରାମବାବୁ ବୋଲି ସମ୍ବୋଧନ କଲେ। ଆଗରୁ ତାକୁ ସମସ୍ତେ ପରଶୁ ବୋଲି ଡାକୁଥିଲେ। ସେ ଚାରିହଳ ବଳଦ, ଦୁଇଟା ଓଟ ଏବଂ କେତୋଟି ବଳଦଗାଡ଼ିର ମାଲିକ ହୋଇଗଲା।

ଧନରତ୍ନ ବଢ଼ିବାରୁ ସେ ତାର ସ୍ତ୍ରୀକୁ ଗହଣା ଗାଣ୍ଠିରେ ସଜାଇଲା ଏବଂ ପିଲାମାନଙ୍କୁ ଭଲ ପୋଷାକ ପିନ୍ଧିବାକୁ ଦେଲା । ପିଲାମାନେ ଯାଇ ସ୍କୁଲରେ ପାଠ ପଢ଼ିବା ଆରମ୍ଭ କଲେ । ଘରେ ଚାକର-ଚାକରାଣୀ ମଧ୍ୟ ରହିଲେ ।

ଚାଷବାସ ଛଡ଼ା ସେ ଟଙ୍କା କରଜ ମଧ୍ୟ ଲଗାଇଲା ଏବଂ ସେଥିରୁ ଖୁବ୍ ସୁଧ ପାଇଲା । ଏତେ ଧନ ବଢ଼ିଲେ ମଧ୍ୟ ପର୍ଶୁରାମର ଅଶାନ୍ତି ବଢ଼ିବାକୁ ଲାଗିଲା । ସେ ଭାବିବାକୁ ଲାଗିଲା ଯେ ଗ୍ରାମର ଜମିଦାରର କେତେ ସମ୍ପତ୍ତି ଅଛି । ତାର ଘର ସାମନାରେ ହାତୀ–ମୋର କେବଳ ଓଟ । ତାର ମନରେ ସବୁବେଳେ ଚିନ୍ତା ଘାରିଲା ଯେପରି ସେ ଜମିଦାରଙ୍କ ଠାରୁ ମଧ୍ୟ ଅଧିକ ସମ୍ପତ୍ତିର ମାଲିକ ହେବ । ସଂଯୋଗବଶତଃ ତାକୁ ଖବର ମିଳିଲା ଯେ ବିକାନେର ନିକଟସ୍ଥ ଗଂଗାନଗର ଇଲାକାରେ ଜମି ବହୁତ ଶସ୍ତା ଦାମରେ ମିଳୁଛି ଏବଂ ସେଠାରେ କେନାଲ ଖୋଳାଯିବାର ଅଛି । ସେ ଜମିରେ ସୁନା ଫଳିବ । ସେ ତାର ପତ୍ନୀ ଓ ପୁତ୍ରକୁ ଜମି କିଣିବା ବିଷୟ କହିଲା । ସେମାନେ କହିଲେ, ଭଗବାନ ଆମକୁ କେଉଁଥିରେ ଊଣା କରିଛନ୍ତି ଯେ ଏତେ ଦୂରରେ ଜମି ନେବ? ସେଟା ତ ଜଙ୍ଗଲ ଜାଗା, ବାଘଭାଲୁଙ୍କର ସ୍ଥାନ । ଏ ବୟସରେ ତମେ ସେଥିରେ ମନ ଦିଅ ନାହିଁ । ପର୍ଶୁରାମ କିନ୍ତୁ ତାର ସିଦ୍ଧାନ୍ତ ବଦଳାଇବାକୁ ଚାହିଁଲା ନାହିଁ । ସେ ଭାବିଲା, ମୁଁ ତ ଖୁବ୍ ପରିଶ୍ରମ କରିପାରେ ଏବଂ ଜୀବନରେ ସବୁ କାମରେ ସୁଫଳ ପାଇଛି । ଏ ସମସ୍ତ ଭାବି ସେ ବେଶ୍ କିଛି ଟଙ୍କା ଧରି ଗଙ୍ଗାନଗରରେ ପହଞ୍ଚିଲା । ଗଙ୍ଗାନଗର ତାର ଗ୍ରାମଠାରୁ ଅନେକ ଦୂରରେ ଥିବାରୁ ତାକୁ ସେଠାରେ ପହଞ୍ଚିବାକୁ କିଛି ଦିନ ଲାଗିଲା । ଏତେ ବାଟ ଆସି ସେ ବହୁତ କ୍ଳାନ୍ତ ହୋଇ ପଡ଼ିଥିଲା । ତାକୁ ମଧ୍ୟ ଜ୍ୱର ହୋଇଗଲା । ତଥାପି ସେ ବଡ଼ କଷ୍ଟରେ ଜମି ମାଲିକ ନିକଟରେ ପହଞ୍ଚି ଜାଣିବାକୁ ପାଇଲା ଯେ ଜମିର ଦାମ ହେକ୍ଟର ପିଛା ମାତ୍ର ସାତଶହ ଟଙ୍କା । ନହର ପାଖରେ ଯିଏ ଯେତେ ଜମି କିଣିବାକୁ ଚାହିଁବ କିଣିପାରିବ । କିନ୍ତୁ ଗୋଟିଏ ସର୍ତ୍ତ ଥିଲା ଯେ କେନାଲ ଖୋଳା ହେବାର ତିନି ବର୍ଷ ମଧ୍ୟରେ ଚାଷ ଆରମ୍ଭ କରିବାକୁ ପଡ଼ିବ ଏବଂ ଦଶବର୍ଷ ପର୍ଯ୍ୟନ୍ତ ସେ ଜମିକୁ ଅନ୍ୟ କାହାକୁ ବିକ୍ରି କରି ହେବ ନାହିଁ । ପର୍ଶୁରାମର ଜମି ବିଷୟରେ ଖୁବ୍ ଭଲ ଜ୍ଞାନ ଥିଲା । ସେ ଜାଣିପାରିଲା ଯେ ଜମିର ଭବିଷ୍ୟତ ଭଲ । ଜମି ନେବା ପାଇଁ ସେ ଏକା ନଥିଲା–ସେଥିପାଇଁ ପଞ୍ଜାବରୁ ମଧ୍ୟ ବହୁତ ଧନୀ କୃଷକମାନେ ଆସିଥିଲେ । ସେ ଭାବିଲା, ଯେତେ ସେ

ପାରିବ କିଣିନେବ। ଏହି ମଉକା ହାତଛଡ଼ା କରିବା ଠିକ୍ ହେବ ନାହିଁ।

ସେ ସମୟରେ ଗାଡ଼ିର ବ୍ୟବସ୍ଥା ନଥିଲା। ତେଣୁ ଅସୁସ୍ଥ ଶରୀରରେ ଭଲ ଜମି ଦେଖିବା ନିମିତ୍ତ ତାକୁ ବେଶ୍ କିଛି ଦୂର ଚାଲିବାକୁ ପଡ଼ିଲା। ଏତେ ପରିଶ୍ରମରେ ତାର ଜ୍ୱର ବଢ଼ିଗଲା। ଏପରି ଅବସ୍ଥାରେ ବି ସେ ଘରକୁ ଫେରିବାକୁ ଇଚ୍ଛା ନକରି ଆହୁରି ଭଲ ଜମି ଦେଖିବା ପାଇଁ ଆଗକୁ ଚାଲିଲା। ମାତ୍ର ତାର ଜ୍ୱରର ପ୍ରକୋପ ବଢ଼ିବାରୁ ଶେଷରେ ବାଧ୍ୟ ହୋଇ ବସାଘରକୁ ଲେଉଟିଲା। ମାତ୍ର ସେଠାରେ ପହଞ୍ଚିବା ପୂର୍ବରୁ ତାର ଅବସ୍ଥା ଏତେ ଅସମ୍ଭାଳ ହୋଇଯାଇଥିଲା ଯେ ସେ ଆଉ ଚାଲି ପାରିଲା ନାହିଁ। ତା'ର ସ୍ତ୍ରୀ ଓ ପୁତ୍ର ଏ ଖବର ପାଇ ଯେତେବେଳେ ପର୍ଶୁରାମ ରହିଥିବା ସ୍ଥାନରେ ପହଞ୍ଚିଲେ ସେତେବେଳକୁ ପର୍ଶୁରାମକୁ ସନ୍ନିପାତ ହୋଇ ଯାଇଥିବାରୁ ସେ ବାଉଳି ହେଉଥିଲା। ସେଇ ବାଉଳି ହେବା ଅବସ୍ଥାରେ ସେ ତାର ସ୍ତ୍ରୀକୁ କହିଲା–"ବହୁତ ଜମି ଅଛି, ସେଥିରୁ ବେଶ୍ କିଛି ଆୟ ହେବ। ସେଠାରେ ମୁଁ ଧାନ-ଗହମ ନ କରି ସୋରିଷ ଓ କପା ଚାଷ କରିବି।"



ସେ ସମୟରେ ରୋଗ ନିମିତ୍ତ ଯାହା ବ୍ୟବସ୍ଥା ଥିଲା ସବୁ କିଛି ପର୍ଶୁରାମ ପାଇଁ କରାଗଲା। କିନ୍ତୁ ତାକୁ ଆରୋଗ୍ୟ କରାଯାଇ ପାରିଲା ନାହିଁ। ସେ ମୃତ୍ୟୁମୁଖରେ ପତିତ ହେଲା। ସେଠାକାର ଲୋକମାନେ ପର୍ଶୁରାମର ପୁତ୍ର ଦ୍ୱାରା ତାର ଶବର ସତ୍କାର କରାଇଲେ। ପର୍ଶୁରାମ ପାଇଁ କେବଳ ପାଞ୍ଚହାତ ଭୂମି ଦରକାର ହୋଇଥିଲା।



# ଅଛୁଆଁ

ଶେଠ ରାମଜୀଲାଲ କେବଳ ନିଜ ଅଞ୍ଚଳରେ ନୁହେଁ, ବରଂ ସେ ଖଣ୍ଡମଣ୍ଡଳରେ ପ୍ରସିଦ୍ଧ ଥିଲେ । ତାଙ୍କର ବିଭିନ୍ନ ପ୍ରକାରର ପାଞ୍ଚ-ଛଅଟି କାରଖାନା ଥିଲା । ଏକହଜାର ଉପରେ ଶ୍ରମିକ ସେହି କାରଖାନାମାନଙ୍କରେ କାମ କରୁଥିଲେ । ବିଦେଶୀ କମ୍ପାନୀମାନଙ୍କ ସହିତ ମଧ୍ୟ ତାଙ୍କର କୋଟି କୋଟି ଟଙ୍କାର କାରବାର ଥିଲା । ବେପାର ବ୍ୟତୀତ ତାଙ୍କର ସାର୍ବଜନିକ କ୍ଷେତ୍ରରେ ବେଶ୍ ନାମ ଥିଲା । ତାଙ୍କ ଦ୍ୱାରା କେତେଗୁଡ଼ିଏ ସ୍କୁଲ୍, କଲେଜ ଏବଂ ଡାକ୍ତରଖାନା ମଧ୍ୟ ପରିଚ୍ଳଳିତ ହେଉଥିଲା । ସେ ନିମ୍ବାର୍କ ସମ୍ପ୍ରଦାୟର ବୈଷ୍ଣବ ଥିବାରୁ ତାଙ୍କର ଘର ନିକଟରେ ଶ୍ରୀନାଥଜୀଉଙ୍କର ସେ ଏକ ବିଶାଳ ମନ୍ଦିର ତୋଳାଇଥିଲେ । ମନ୍ଦିରରେ ଘରର ସମସ୍ତ ବ୍ୟକ୍ତି ଦୁଇବେଳା ପ୍ରସାଦ ସେବନ କରୁଥିଲେ ।

ସମସ୍ତ ଧନରତ୍ନ ଥାଇ ସୁଦ୍ଧା ସେ ଏବଂ ତାଙ୍କର ପତ୍ନୀ ଦୁଃଖରେ କାଳାତିପାତ କରୁଥିଲେ, ତାର କାରଣ ସେ ନିଃସନ୍ତାନ ଥିଲେ । ଏକଦା ସେ ହରିଦ୍ୱାର ଠାରେ ହେଉଥିବା କୁମ୍ଭମେଳାକୁ ଯାତ୍ରା କଲେ । ସେଠାରେ ତାଙ୍କୁ ଏକ ସେବାସମିତି ଦ୍ୱାରା ଦୁଇବର୍ଷର ଏକ ଶିଶୁ ମିଳିଲା । ଶେଠଜୀଙ୍କ ସ୍ତ୍ରୀ ଶିଶୁଟିକୁ କୋଳ କରି ଗଦ୍‌ଗଦ ହୋଇଗଲେ । ପିଲାଟିକୁ ଦେଖିଲେ ମନେ ହେଉଥିଲା ସେ କୌଣସି କୁଳୀନ ବଂଶର, କାରଣ ତାର ଚେହେରା ଅତ୍ୟନ୍ତ ସୁନ୍ଦର ଥିଲା । ସେମାନେ ନିଜର ଗ୍ରାମକୁ ଫେରି ପିଲାଟିକୁ ପରମ୍ପରାନୁସାରେ ପୂଜାକରି ନିଜ ଗୋତ୍ରରେ ସାମିଲ କଲେ ଏବଂ ଏହି ପରିପ୍ରେକ୍ଷୀରେ ବଡ଼ ଆଡ଼ମ୍ବର ସହକାରେ ଭୋଜିଭାତ କଲେ, ଅନେକ ବ୍ୟକ୍ତିଙ୍କୁ ଭୋଜନରେ ଆପ୍ୟାୟିତ କଲେ । ଏହି ଅବସରରେ ଶେଠଜୀ ଗୋଟିଏ କଲେଜ ଏବଂ ହସ୍ପିଟାଲର ଶୁଭାରମ୍ଭ କଲେ । ପିଲାଟିର ନାମ ଦେଲେ ଗୋପାଳକୃଷ୍ଣ । ଲୋକମାନେ ପିଲାଟି ବିଷୟରେ କିଛି ଜାଣିବାକୁ ପ୍ରୟାସ କରି ନଥିଲେ ।

ପିଲାଟି ଆସିବା ପରେ ଶେଠଙ୍କର ପତ୍ନୀଠାରୁ ବର୍ଷକ ମଧ୍ୟରେ ଗୋଟିଏ କନ୍ୟାରତ୍ନ ଜନ୍ମ ହେଲା । ଧନ-ଦୌଲତ ବଢ଼ିବାକୁ ଲାଗିଲା । ଏପରି ୧୭/୧୮ ବର୍ଷ ବିତିଗଲା । ଗୋପାଳ ଏବଂ ଛୋଟ ଭଉଣୀ ସୁମନ କଲେଜରେ ପଢ଼ିଲେ । ଭାଇ-ଭଉଣୀଙ୍କ ମଧ୍ୟରେ ଖୁବ୍ ସ୍ନେହ ଥିଲା । ଗୋପାଳ ପଢ଼ାରେ

ଯେମିତି ଖେଳ-କୁଦରେ ମଧ୍ୟ ସେମିତି ପାରଙ୍ଗମ ଥିଲା । ସେ କଲେଜରେ ପ୍ରଥମ ସ୍ଥାନରେ ରହୁଥିଲା । ଏମ୍. ଏ. ପରୀକ୍ଷାରେ ମଧ୍ୟ ସେ ପ୍ରଥମ ସ୍ଥାନ ଅଧିକାର କଲା ।

ଏମ୍. ଏ. ପଢ଼ି ସାରିଲା ପରେ ସେ ଅଧିକ ପାଠ ପଢିବା ପାଇଁ ବିଦେଶ ଯିବାକୁ ଚାହୁଁଥିଲା, ମାତ୍ର ଶେଠଜୀ ତାର ବାହାଘର କରି ନିଜର ବେପାରରେ ଲଗାଇବାକୁ ଚାହୁଁଥିଲେ । ଗୋପାଳର ଭଉଣୀ ସୁମନ ତାର ଭାଇ ପାଇଁ ଗୋଟିଏ କନିଆ ମଧ୍ୟ ଠିକଣା କରି ସାରିଥିଲା । ସେ ଝିଅଟିକୁ କେତେ ଥର ସାଙ୍ଗରେ ଆଣି ଗୋପାଳକୁ ଏବଂ ତାର ପିତାମାତାଙ୍କୁ ଦେଖାଇଥିଲା । ମୋଟା ମୋଟି ସବୁ ଠିକ୍ ହୋଇ ଯାଇଥିଲା; କେବଳ ତାର ନିର୍ବନ୍ଧ ହେବାଟା ବାକି ଥିଲା ।

ସେହି ବର୍ଷ ବିକାନୀରର ଉତ୍ତରାଞ୍ଚଳରେ ଦୁର୍ଭିକ୍ଷ ପଡ଼ିବାରୁ ଶହ ଶହ ସଂଖ୍ୟାରେ ଲୋକମାନେ ଘର ଛାଡ଼ି ତାଙ୍କର ଗାଈ-ଗୋରୁ ଧରି ମାଳବା ଅଞ୍ଚଳକୁ ପଳାଇ ଯାଉଥିଲେ । ଶେଠଜୀ ନିଜ ଘରର ଅନତିଦୂରରେ ସେହି ଲୋକମାନଙ୍କର ବିଶ୍ରାମ ନିମିତ୍ତ ବ୍ୟବସ୍ଥା କରିଥିଲେ । ଲୋକମାନେ ସେଠାରେ ୨/୪ ଦିନ ବିଶ୍ରାମ କରି ତା'ପରେ ଯାଉଥିଲେ । ଲୋକମାନଙ୍କର ରହଣି କାଳରେ ଶେଠଜୀ ତାଙ୍କର ସେବା ନିମିତ୍ତ ସେବାଦଳ ନିଯୁକ୍ତ କରିଥିଲେ । ଏହି ସେବା କାମରେ ଗୋପାଳ ଏବଂ ତାର ଭଉଣୀ ସୁମନ ମଧ୍ୟ ସାହାଯ୍ୟ କରୁଥିଲେ । ଦିନେ ସେମାନେ ଗୋଟିଏ ଯାତ୍ରୀ ଦଳର ବ୍ୟବସ୍ଥା କରୁଥିବା ସମୟରେ ଦଳ ମଧ୍ୟରେ ଥିବା ଜଣେ ବୃଦ୍ଧ ବ୍ୟକ୍ତି ଗୋପାଳକୁ ବାରମ୍ବାର ଦେଖୁଥିଲା, କିଛି ସମୟ ପରେ ସେ ତାର ସ୍ତ୍ରୀକୁ ଡାକି ଆଣିଲା ।

ସୁମନ ସେ ଲୋକଟିକୁ ପଚାରିଲା ବାବା! ଆପଣ ଏମିତି କଣ ଦେଖୁଛନ୍ତି? ଏବଂ ଆପଣଙ୍କ ଆଖିରୁ କାହିଁକି ଲୁହ ଝରୁଛି? କିଛି ସମୟ ପରେ ବୁଢ଼ାଟି ଚୁପ୍ ରହି କହିଲା, "ମାଆରେ! ମୋ ଛୋଟିଆ ପୁଅ ରାମୁ ଅଠର ବର୍ଷ ତଳେ ହରିଦ୍ୱାର କୁମ୍ଭମେଳାରେ ହଜି ଯାଇଥିଲା । ସେ ଖୁବ୍ ଗୋରା ଥିଲା । ତାର ବାମ ଗାଲରେ ଏପରି ଏକ କଳାଯାଇ ଥିଲା । ତମର ଭାଇ ଗୋପାଳକୁ ଦେଖି ମୋର ପୁଅ କଥା ମନେ ପଡ଼ି ଯାଉଛି ।"

ରାତିରେ ବୃଦ୍ଧ ବ୍ୟକ୍ତିଟିକୁ ଡାକି ପଚରା-ଉଚରା କରିବାରୁ ଜଣା ପଡ଼ିଲା ଯେ ସେ ଜାତିରେ ଚମାର । ବୃଦ୍ଧ ବ୍ୟକ୍ତି ଜଣକ ତା ସ୍ତ୍ରୀ ସହିତ



ଅଠର ବର୍ଷ ତଳେ ହରିଦ୍ୱାର କୁମ୍ଭମେଳାକୁ ଯାଇଥିଲା ଏବଂ ସେଠାରେ ତାର ପୁଅ ନିଖୋଜ ହୋଇ ଯାଇଥିଲା । ଏପର୍ଯ୍ୟନ୍ତ ସେମାନେ ତାର ସନ୍ଧାନ ପାଇନାହାନ୍ତି । ପିଲାର ଆଉ କିଛି ଚିହ୍ନ ଥିଲା କି ବୋଲି ପଗ୍ଚରିବାରୁ ବୃଦ୍ଧ କହିଲେ ତାର ଡାହାଣହାତରେ ଏକ କଟାଦାଗ ମଧ୍ୟ ଥିଲା । ଏ ସମସ୍ତ କଥା ଗୋପାଳ ଏବଂ ତାର ମା ମଧ୍ୟ ଶୁଣୁଥିଲେ ।

ଏସବୁ ଶୁଣିଲା ପରେ ବୃଦ୍ଧ ବ୍ୟକ୍ତିକୁ ୧୦୦/୨୦୦ ଟଙ୍କା ଦେଇ ବିଦା କଲେ ଏବଂ କହିଲେ, ତୁମେ ଏପରି ଅବାଞ୍ଛିତ କଥା କହିବା ଠିକ୍ ନୁହେଁ । ତୁମେ କାଲି ଏଠାରୁ ଗ୍ଚଲିଯାଅ । ମାତ୍ର ଏପରି କଥା ଲୁଚି ରହେ ନାହିଁ । ପର ଛିଦ୍ରାନ୍ୱେଷଣରେ ଲୋକଙ୍କୁ ସୁଖ ମିଳେ । ଲୋକମାନେ ଚମାର ପୁଅ ବୋଲି ସନ୍ଦେହ କରି ଫୁସରଫାସର ହେବାରୁ ଗ୍ଚରିଆଡ଼େ ପ୍ରଘଟ ହେଲା ।

ଶେଠ ଏବଂ ଶେଠଙ୍କର ସ୍ତ୍ରୀ ଘର ଦରଜା ବନ୍ଦ କରି ରହିଲେ ଏବଂ ଯେତେ ଡାକିଲେ ବି ଭୋଜନ କରିବାକୁ ଆସିଲେ ନାହିଁ । ଗୋପାଳର ବିଚକ୍ଷଣ ବୁଦ୍ଧି ଥିଲା । ଏବକାର ଘଟଣା ବିଷୟରେ ସେ ସମସ୍ତ ଅବଗତ ହୋଇ ଏକ ସିଦ୍ଧାନ୍ତରେ ପହଞ୍ଚିଲା । ପରଦିନ ସକାଳେ ସେ ସୁମନ ପାଖକୁ

ଯାଇ କହିଲା– "ହେ ଭଉଣୀଜୀ! ଯାହାକିଛି ହେବାର ଥିଲା ହୋଇଗଲାଣି। ଏଥିରେ ମୋର କୌଣସି ଦୋଷ ନାହିଁ। କିନ୍ତୁ ଯାହା ହେଲେ ବି ମୋ ଯୋଗୁଁ ଆପଣମାନଙ୍କୁ ଏତେ ବଡ଼ ଅପମାନ ସହ୍ୟ କରିବାକୁ ପଡ଼ିଲା। ଏବେ ବାପା ଓ ମାଙ୍କୁ କୌଣସି ଉପାୟରେ ଖୁଆଅ। ସେମାନେ ଗତ କାଲିଠାରୁ ଉପବାସରେ ରହିଛନ୍ତି।"

ସୁମନ ଦେଖିଲା ଯେ, ଯେଉଁ ଭାଇ ସଦାବେଳେ ହସ-ଖୁସିରେ ଥଟ୍ଟା-ନକଲ କରି ତା ସହିତ କଥା ହେଉଥିଲା ଏବଂ ସୁମନ-ସୁମନ ବୋଲି ଡାକ ଛାଡୁଥିଲା, ଆଜି ତାକୁ ଭଉଣୀଜୀ ବୋଲି ସମ୍ବୋଧନ କରୁଛି ଏବଂ ତା ପାଖରୁ କିଛି ଦୂରରେ ବସି ରହିଛି।

ଦୁହେଁ ଅତ୍ୟନ୍ତ ଆକୁଳିତ ହୋଇ ଡାକିବାରୁ ବାପା-ମା କବାଟ ଖୋଲିଲେ। ଦେଖାଗଲା ଯେ ଗୋଟିଏ ଦିନରେ ବାପା ବୁଢ଼ା ମଣିଷ ପରି ଦେଖାଯାଉଛନ୍ତି ଏବଂ ମାଆ ବିଛଣା ଉପରେ ଅଚେତ ହୋଇ ପଡ଼ିଛି। ଅନ୍ୟ ଦିନ ପରି ଗୋପାଳ ଶେଠଙ୍କର ପାଦ ଛୁଇଁ ପ୍ରଣାମ କଲା ନାହିଁ, ମାତ୍ର ସାମାନ୍ୟ ଦୂରରେ ଠିଆ ହୋଇ କହିଲା–"ବାପା! ମୋର ଆପଣଙ୍କ ସହିତ ସମ୍ବନ୍ଧ ଈଶ୍ୱରଙ୍କ ଦ୍ୱାରା ନିର୍ଦ୍ଧାରିତ ଥିଲା। ଏବେ ଆପଣ ଧୈର୍ଯ୍ୟ ଏବଂ ସାହସର ସହିତ ମୋତେ ଆପଣଙ୍କ ଠାରୁ ବିଦାୟ ଦିଅନ୍ତୁ। ମା'ଙ୍କର ଅବସ୍ଥା ଭଲ ନାହିଁ, ଆପଣ ତାଙ୍କୁ ସାନ୍ତ୍ୱନା ଦିଅନ୍ତୁ। ଆପଣ ମୋ ପିଛା ଯେତେ ଟଙ୍କା ଖର୍ଚ୍ଚ କରି ମୋତେ ପଢ଼ାଇ ମଣିଷ କରିଛନ୍ତି, ତଦ୍ଦ୍ୱାରା ମୁଁ ଅନାୟାସରେ ମାସକୁ ୨-୩ ଶହ ଟଙ୍କା ରୋଜଗାର କରିପାରିବି।"

ବହୁତ ସମୟରୁ ଗଚ୍ଛିତ ରହିଥିବା ଜଳଭଣ୍ଡାରର ବନ୍ଧ ଭାଙ୍ଗିଗଲା ପରି ପ୍ରତିଷ୍ଠିତ ଶେଠଜୀ ଛୋଟ ପିଲାଙ୍କ ପରି କଇଁ କଇଁ କାନ୍ଦି ପକାଇଲେ। କହିଲେ, "ମୁଁ ଖୁସିମନରେ ଚମାର ହୋଇଯିବି, ମାତ୍ର ତୋତେ କୌଣସି ପ୍ରକାରେ ତ୍ୟାଗ କରିପାରିବି ନାହିଁ। ତୁ ଜଣେ ଅଛୁଆଁ ଜାତି ଘରେ ଜନ୍ମ ହୋଇଥାଇ ପାରୁ, ମାତ୍ର ତୋ ପରି ଜଣେ ବୁଦ୍ଧିମାନ୍, ଧାର୍ମିକ ପିଲା ଉଚ୍ଚକୁଳରେ କେତେଜଣ ଅଛନ୍ତି? ଶ୍ରୀରାମ କେବଳ ୧୪ ବର୍ଷ ପାଇଁ ବନବାସ ଯାଇଥିଲେ, ମାତ୍ର ତୁ ମୋର ବୃଦ୍ଧ ବୟସରେ ଚିର ଦିନ ପାଇଁ ମୋଠାରୁ ଅଲଗା ହୋଇ ଯିବାକୁ ଚାହୁଁଛୁ?"

ଏପଟେ ସକାଳୁ ସକାଳୁ ଚିହ୍ନାଜଣା ଲୋକ ତଥା ବନ୍ଧୁ-ବାନ୍ଧବମାନେ କୌଣସି ଆଳରେ ଆସି ଶେଠଜୀଙ୍କୁ ସହାନୁଭୂତି ଦେଖାଇ ସବୁ କିଛି ଜାଣି ମଧ୍ୟ କଣ ହେଲା, କିପରି ହେଲା, ଆଦି ପଚ୍ଚରିବାକୁ ଲାଗିଲେ । ସାଙ୍ଗରେ କେତେଜଣ ବୃଦ୍ଧ ଚମାର ବ୍ୟକ୍ତିଙ୍କୁ ନେଇ ଆସିଥିଲେ ।

କିଛି ସମୟ ପରେ ଗୋପାଳ ସମସ୍ତଙ୍କ ସାମନାରେ ଯାଇ କହିଲା, "ଆପଣମାନେ ଯାହା କିଛି ଶୁଣିଛନ୍ତି ସବୁ ସତ୍ୟ । ମୁଁ ଚମାର କୁଳରେ ଜନ୍ମ ଏବଂ ମୋର ପିତା ଚମାର । ତେଣୁ ମୁଁ ଏବେ ଘର ଏବଂ ଆପଣଙ୍କର ଗ୍ରାମ ଛାଡ଼ି ଚ୍ଚାଲିଯିବାକୁ ପ୍ରସ୍ତୁତ ଅଛି । ଆପଣ କୃପା କରି ଶେଠଜୀଙ୍କୁ କ୍ଷମା କିରଦିଅନ୍ତୁ । ଶେଠଜୀ ଯାହା କରିଛନ୍ତି, ସେ ସବୁ ତାଙ୍କର ଅଜ୍ଞାତରେ ହୋଇଛି । ପୁଣି ପାପର ତ ପ୍ରାୟଶ୍ଚିତ୍ତ ବି ଅଛି ।"

ଯାହାହେଲେ ବି ଶେଠଜୀ କୌଣସି ମତେ ଗୋପାଳକୁ ଛାଡ଼ିବାକୁ ରାଜି ନଥିଲେ । ତାଙ୍କର ଚକ୍ଷୁରୁ ଅବାରିତ ଅଶ୍ରୁଧାରା ନିର୍ଗତ ହେଉଥିଲା । ସେ ଜବରଦସ୍ତ ତାକୁ କୁଣ୍ଢାଇ ଧରି କହିଲେ, "ସୁମନ ମଧ୍ୟ ଲୁଗାପଟା ବାନ୍ଧି ତୋ ସହିତ ଯିବାକୁ ପ୍ରସ୍ତୁତ ହୋଇ ସାରିଲାଣି । ଏଣୁ ମୁଁ ଏଠାରେ ଏକୁଟିଆ ରହି କଣ କରିବି? ଅନ୍ୟ କୌଣସି ଗ୍ରାମରେ ଯାଇ ଚମାର ସାହିରେ ରହିଯିବି ।"

ଗୋପାଳ ଚ୍ଚାହିଁଥିଲେ ଶେଠଙ୍କର ତା ପ୍ରତି ମାୟା ମମତାରୁ ଲାଭ ଉଠାଇ ପାରିଥାନ୍ତା, ମାତ୍ର ସେ ବହୁପ୍ରକାରରେ ତାଙ୍କୁ ଏବଂ ସୁମନକୁ ବୁଝାଇ ତାଙ୍କ ଠାରୁ ବିଦାୟ ନେଲା । ପରଦିନ ଏକ ଯାତ୍ରୀଦଳରେ ମାଳବା ଅଞ୍ଚଳକୁ ଯାତ୍ରା କଲା । ବହୁତ ଅନୁନୟ ବିନୟ କରି କହିବାରୁ ଗୋପାଳ କେବଳ ୨/୪ ଖଣ୍ଡ ଧୋତି ଏବଂ ପଞ୍ଜାବି ନେଇଥିଲା । ଏହା ବ୍ୟତୀତ ସେ କିଛି ନେଇ ନଥିଲା ।

ତାର ବିଦାୟ ସମୟରେ ସାରା ଗ୍ରାମବାସୀ ସ୍ତମ୍ଭୀତ ହୋଇ ଯାଇଥିଲେ ଏବଂ ଗତକାଲି ପର୍ଯ୍ୟନ୍ତ ସେମାନଙ୍କ ଈର୍ଷାଯୁକ୍ତ ଫୁସରଫାସର କଥା ବନ୍ଦ ହୋଇ ଯାଇଥିଲା ଏବଂ ଦେଖା ଯାଇଥିଲା ସେ ସମସ୍ତଙ୍କ ଆଖିରେ ଲୁହ ।



# ଉତ୍ଥାନ-ପତନ

ଊନବିଂଶ ଶତାବ୍ଦୀର ଶେଷ ବେଳର କଥା । କରାଚୀ ଠାରେ ଏକ ମଧ୍ୟବିତ୍ତ ପରବାରରେ ହରନାମ ନାମକ ଏକ ବାଳକ ଥିଲା । ସେ ତାର ମା'କୁ ପିଲାବେଳରୁ ହରାଇଥିଲା । ତାର ପିତା ପ୍ରୌଢ଼ବୟସରେ ଗୋଟିଏ ଗରିବ ଘରର ଝିଅକୁ ବିଭା ହେଲା । ତାର ସାବତ ମା'ର ପୁଅ ଏବଂ ଝିଅ ହେଲେ ।

ହରନାମର ଗୋଟିଏ ବଡ଼ ଭଉଣୀ ଥିଲା ଯେ କି ବିଭା ହୋଇ ଯାଇଥିଲା । ତାର ବଡ଼ ଭଉଣୀକୁ ତାର ବାପା ଓ ସାବତ ମା' ପସ୍ତରନ୍ତି ନାହିଁ । ତାକୁ କେବେ ଘରକୁ ଆସିବାକୁ କହନ୍ତି ନାହିଁ । ବେଳେ ବେଳେ ଲୁଚି କରି ତାର ବଡ଼ ଭଉଣୀ ପାଠଶାଳାରେ ହରନାମ ଥିବାବେଳେ ଆସି ତାକୁ କିଛି କିଛି ଜିନିଷ ଦେଇଯାଏ, ମାତ୍ର ତାର ନିଜ ଘରେ ତାକୁ ତାର ସାବତ ମା' କିଛି ଦିଏ ନାହିଁ । ଘରେ ଭଲ ଖାଦ୍ୟ ତାକୁ ମିଳେନା । ସାବତ ମା' ତାର ପୁଅ ଝିଅଙ୍କୁ ନୂଆ କପଡ଼ା ଇତ୍ୟାଦି ଦେଲେ ମଧ୍ୟ ହରନାମ କଥା ତା ମନରେ ଆସେନା । ଛୋଟ ଭାଇ ଭଉଣୀ ତାକୁ କିଛି ଭଲ ଖାଇବା ଜିନିଷ ଦେବାକୁ ଇଛା କଲେ ତାର ସାବତ ମା' ବାରଣ କରେ । ବିଚରା ହରନାମ ଜୁଳୁଜୁଳୁ କରି ଖାଲି ଅନେଇ ରହିଥାଏ ।

ଦିନେ ହରନାମର ସାମାନ୍ୟ ଦୋଷରେ ତାର ସାବତ ମା' ତାକୁ ଖୁବ୍ ପିଟିଲା । ବାପ ଦେଖୁଥିଲେ ମଧ୍ୟ ଏହାର ପ୍ରତିବାଦ କରୁନଥିଲା । ନଖାଇ ନପିଇ ବିଚରା ହରନାମ ଘରୁ ପଳାଇ ଆସି ସମୁଦ୍ରତଟରେ ଏକ ପଣ୍ୟବାହୀ ଜାହାଜ ଥିବା ଦେଖି ତା ଉପରକୁ ଚଢ଼ିଗଲା ଏବଂ ଜାହାଜ ମଧ୍ୟରେ ଲୁଚି ରହିଲା ।

କିଛି ସମୟ ପରେ ଜାହାଜ ଚ୍ଚଲିବାକୁ ଆରମ୍ଭ କଲା । ଏକଥା ଜାଣି ପାରି ହରନାମ କାନ୍ଦିବାକୁ ଆରମ୍ଭ କଲା । ଏହି ଜାହାଜଟି ପର୍‌ସିଆନ୍ ଅୟେଲ୍ କମ୍ପାନୀର ଥିଲା । ଏହି ଜାହାଜରେ ଆରବ ଦେଶର ଲୋକ ବେଶୀ ଥିଲେ ଏବଂ ଏଥିରେ ଦୁଇଚ୍ଚରିଜଣ ଅଫିସର୍ ଥିଲେ । ସେମାନେ ସେତେବେଳେ ଏହି ୧୨-୧୩ ବର୍ଷର ବାଳକଟିକୁ ଦେଖି ଆଶ୍ଚର୍ଯ୍ୟ ହେଲେ ।



ଧୀରେ ଧୀରେ ବାଳକଟି ପାଖରୁ ସବୁ ଖବର ଜାଣିଲେ । ମାତ୍ର ସେମାନେ କରିବେ କଣ? ଜାହାଜ ପୁନର୍ବାର କରାଚୀ ବନ୍ଦରକୁ ଯିବା ସମ୍ଭବ ନଥିଲା । ବାଳକଟି ପ୍ରତି ଜାହାଜର କାପ୍‌ଟେନ୍‌ଙ୍କର ମମତା ଆସିବାରୁ ସେ ତାକୁ ତାଙ୍କର କାବିନ୍‌ରେ ରଖିଲେ । ଇରାନ୍‌ରେ ପହଞ୍ଚିବା ପରେ ସେ ପିଲାଟିକୁ ଜଣେ ଧନୀଲୋକ ଘରେ ଚାକିରିରେ ରଖିଦେଲେ । ହରନାମ ଅତ୍ୟନ୍ତ ବୁଦ୍ଧିମାନ ଥିଲା । କିଛି ଦିନ ମଧ୍ୟରେ ସେ ଆରବି, ଫ୍ରେଞ୍ଚ ଏବଂ ଇଂରାଜୀ ଭାଷା ଶିଖିଗଲା ଏବଂ ସେ ଭାଷାରେ ଭଲଭାବରେ ଲୋକଙ୍କ ସହିତ କଥା ହେବାରେ ତାର କିଛି ଅସୁବିଧା ରହିଲା ନାହିଁ ।

ଏହି ସମୟରେ ଇରାନ୍‌ର ତୈଳ କମ୍ପାନୀରେ ବହୁତ ଇଂରେଜ ଅଫିସର ରହୁଥିଲେ । ପରସିଆନ୍ ଅଏଲ କମ୍ପାନୀର ବଡ଼ ସାହେବ ବ୍ରିଟେନ୍ ତରଫରୁ ସର୍ବୋଚ୍ଚ ରାଜଦୂତ ମଧ୍ୟ ଥିଲେ । ଦିନେ ସାହେବ ଏବଂ ତାଙ୍କର ପତ୍ନୀ ଟହଲ ମାରୁଥିବା ସମୟରେ କୌଣସି ଆରବି ଶବ୍ଦ ବିଷୟରେ କଥା ହେଉଥିଲେ । ହରନାମ ସେଠାରେ ବୁଲୁଥିଲା । ସେ କ୍ଷମାଯାଚନାପୂର୍ବକ ବିନୟଭାବରେ କହିଲା ଯେ ମେମ୍ ସାହିବା ଯାହା କହୁଛନ୍ତି ସବୁ ଠିକ୍ ।

ସାହେବ-ସାହେବାଣୀଙ୍କର ହରନାମ ଉପରେ ଶ୍ରଦ୍ଧା ଆସିଗଲା । ହରନାମକୁ ତାଙ୍କ ପାଖରେ ଥିବା ଜାଗାରେ ରହିବାକୁ ସୁବିଧା କରି ଦିଆଗଲା

ଏବଂ ତାର ଖାଇବା ପିଇବାର ବନ୍ଦୋବସ୍ତ ହୋଇଗଲା । ହାତ ଖର୍ଚ୍ଚ ପାଇଁ ତାକୁ ମାସକୁ ଦୁଇଟଙ୍କା ମିଳିଲା । ହରନାମର କାମ ଥିଲା ମେମ୍ ସାହେବଙ୍କୁ ଆରବି ଏବଂ ଫରାସୀ ଭାଷା ଶିଖାଇବା ।

ପ୍ରଥମ ମହାଯୁଦ୍ଧ ସମୟରେ ଇରାନ ମଧ୍ୟଏସିଆ ଏବଂ ପୂର୍ବୀୟ ଦେଶମାନଙ୍କର ସପ୍ଲାଇ କେନ୍ଦ୍ର ଥିଲା । ମାସରେ କୋଟି କୋଟି ଟଙ୍କାର ଜିନିଷପତ୍ର କାରବାର ହେଉଥିଲା । ତେଲ କମ୍ପାନୀର ବଡ଼ ସାହେବ ନିର୍ଦ୍ଦେଶକ ହିସାବରେ ନିଯୁକ୍ତ ଥିଲେ ।

ଅଧିକାଂଶ ପଦାର୍ଥର ବିତରଣ କାର୍ଯ୍ୟ ହରନାମ୍ ଦାସ୍ ଏଣ୍ଡ କମ୍ପାନିକୁ ମିଳିଲା । ୧୯୧୮ ବେଳକୁ ହରନାମ ଦାସ କୋଟିପତି ହୋଇଗଲା । ଏଠାରେ ହରନାମ 'କଣ୍ଟ୍ରାକ୍ଟ ମାରେଜ୍' ବା ସ୍ୱଳ୍ପକାଳୀନ ବିବାହ କଲା । ତାର ଏକ ସୁନ୍ଦର ଅଟ୍ଟାଳିକା ମଧ୍ୟ ନିର୍ମାଣ ହୋଇ ଯାଇଥିଲା । ତା ଘରେ ଅନେକ ସୁନ୍ଦରୀ ଦାସୀ ରହିଥିଲେ । ତାଛଡ଼ା ତାର ଚାକର-ବାକର ସବୁ କିଛି ରହିଥିଲେ । ତାର ଘରକୁ ଅନେକ ମାନ୍ୟଗଣ୍ୟ ଅତିଥି ଆସୁଥିଲେ । ସେ ସମସ୍ତଙ୍କର ଯଥାବିଧି ସତ୍କାର କରୁଥିଲା ।

ଘଟଣାଚକ୍ରରେ ବା ସଂଯୋଗରେ ଏକ ଭାରତୀୟ ସାଧୁ ବୁଲୁବୁଲୁ ତା ଘରପାଖରେ ପହଞ୍ଚିଲେ । ନିଜ ଦେଶର ଜଣେ ସନ୍ନ୍ୟାସୀର ସତ୍କାର ଅନ୍ୟମାନଙ୍କ ଅପେକ୍ଷା ଅଧିକ ହେବା ସ୍ୱାଭାବିକ୍ । ଗୋଟିଏ ମାସ ଉକ୍ତ ସନ୍ନ୍ୟାସୀଙ୍କୁ ରାଜା-ମହାରାଜାଙ୍କ ପରି ବ୍ୟବହାର କରି ତାଙ୍କର ବିଦାୟ କାଳରେ ଦକ୍ଷିଣା ସ୍ୱରୂପ ବହୁମୂଲ୍ୟ ପଶମ ବସ୍ତ୍ର ତଥା ବେଶ୍ କିଛି ଅର୍ଥ ଦକ୍ଷିଣା ସ୍ୱରୂପ ଦେଲା ।

× × ×

ଦୀର୍ଘ ପନ୍ଦର ବର୍ଷ ପରେ ଜଣେ ସାଧୁ ମହାତ୍ମା ହୃଷୀକେଶର ମୁନିକୀ ରେତି ଠାରେ ଗୋଟିଏ ବଡ଼ ପକୋଡ଼ି ଦୋକାନ ଠାରେ ଠିଆ ହୋଇ ଏକଲୟରେ ଦୋକାନୀକୁ ନିର୍ନିମେଷ ନୟନରେ ଚାହିଁ ରହିଲେ । ଦୋକାନୀ ମହାତ୍ମାଙ୍କୁ ଦେଖି ଖୁସିରେ ତାଙ୍କୁ ନିମନ୍ତ୍ରଣ କଲେ । ସେଠାରେ ତାଙ୍କ ପୂର୍ବରୁ ୪/୫ ଜଣ ସନ୍ନ୍ୟାସୀ ପ୍ରସାଦ ସେବନ କରୁଥିଲେ । ଦୋକାନରେ ଗ୍ରାହକମାନଙ୍କର ଭିଡ଼ ବି ଜମିଥିଲା ।

ସନ୍ୟାସୀ ପନ୍ଦର ବର୍ଷ ପୂର୍ବେ ଇରାନ୍‌ରେ ଥିବା ପ୍ରବାସୀଙ୍କର କାହାଣୀ କହି ସାରି ଦୋକାନୀଙ୍କୁ କହିଲେ ଯେ ଶେଠ ହରନାମ ଦାସଙ୍କର ଚେହେରା ତୁମ ସହିତ ମିଶି ଯାଉଛି । ଯେତେବେଳେ ତାଙ୍କୁ ଜଣାଗଲା ଯେ ସେ ସେହି ହରନାମ ଦାସଙ୍କ ସହିତ କଥାଭାଷା ହେଉଛନ୍ତି, ତାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ ।

ଯେଉଁ କଥା ତାଙ୍କୁ ସେ ଶୁଣାଇ ଥିଲା ତାହା ଏପରି ଥିଲା–

ଆପଣଙ୍କର ଚ୍ଳିଯିବାର ଏକବର୍ଷ ପରେ ବଡ଼ ସାହେବଙ୍କ ପରେ ଛୋଟ ସାହେବ କାମ ସମ୍ଭାଳିଲେ । ମୁଁ କେବେ ହେଲେ ତାଙ୍କୁ ସେମିତି ଖାତିର୍ କରୁନଥିଲି । ଏଥିପାଇଁ ସେ ଏବଂ ତାଙ୍କର ପାଖ ଲୋକ ମୋ ପ୍ରତି ଈର୍ଷା ପରାୟଣ ଥିଲେ । କିଛି ଦିନ ପରେ ମୋ ନାଁରେ ମିଥ୍ୟା ମକଦ୍ଦମା କରାଗଲା । ଏହି ମକଦ୍ଦମାରେ ଦୋଷୀ ସାବ୍ୟସ୍ତ ହେଲେ ମୃତ୍ୟୁଦଣ୍ଡ ମିଳିଥାଏ ।

ଯଥାଶୀଘ୍ର ମୁଁ ମୋର ଗୁମାସ୍ତାକୁ କାର୍ଯ୍ୟ ସମ୍ଭାଳିବାକୁ କହି ଚ୍ରିପାଞ୍ଚଲକ୍ଷ ଟଙ୍କା ଧରି ନିଜର ସେକ୍ରେଟେରୀ ସହିତ ଇରାନ୍‌ରୁ ଛଦ୍ମବେଶରେ ପଳାଇ ଆସିଲି । ରାସ୍ତାରେ ମୋର ସେକ୍ରେଟେରୀ ସବୁ ଟଙ୍କା ନେଇ ରାସ୍ତାରେ ଉଭାନ ହୋଇଗଲା । ବମ୍ବେ ବନ୍ଦରରେ ପହଞ୍ଚିବା ବେଳକୁ ମୋ ପାଖରେ ଅଳ୍ପ କିଛି ଟଙ୍କା ଏବଂ ଗୋଟିଏ ମୂଲ୍ୟବାନ୍ ଘଣ୍ଟା ଥିଲା ।

ଘଣ୍ଟା ବିକିବାକୁ ଦୁଇତିନିଟି ଦୋକାନକୁ ଗଲି । ଦୋକାନୀ ମୋର ମଇଳା ବେଶ ଏବଂ ଦାଢ଼ି ଦେଖି ସନ୍ଦେହ କଲେ ଯେ ମୁଁ ବୋଧେ ଘଣ୍ଟା ଚ୍ରେରି କରି ଆଣିଛି । ସେ କେବଳ ୫୦/୬୦ ଟଙ୍କା ଦେବାକୁ କହିଲେ, ଏ କଥାରେ ମୁଁ କ୍ରୋଧିତ ହୋଇ ଘଣ୍ଟାକୁ ସମୁଦ୍ରରେ ପକାଇଦେଲି ।

କୌଣସି ଉପାୟରେ ଆସି ବିଭିନ୍ନ ସ୍ଥାନରେ ମୁଲଲାଗି ଏଠାରେ ପକୋଡ଼ି ଦୋକାନ କଲି । କିଛି ଦିନ ପର୍ଯ୍ୟନ୍ତ ବହୁତ ସନ୍ତାପିତ ହୋଇଥିଲି । ଦିନେ ଏକ ସାଧୁ ମହାତ୍ମା ଦେଖା ହେଲେ । ତାଙ୍କର ଉପଦେଶ ଥିଲା– "ଧନ ଓ ମାନରେ ସୁଖ କେଉଁଠି? ସାଧୁମହାତ୍ମାମାନଙ୍କର ସେବା କର, ସେଥିରେ ଶାନ୍ତି ପାଇବ ।" ସେଇ ଦିନରୁ ସାଧୁମହାତ୍ମାମାନଙ୍କୁ ପ୍ରସାଦ ପ୍ରଦାନ କରି ଯାହା କିଛି ବଞ୍ଚିଯାଉଛି, ସେଥିରେ ଦୁଇ ବଖତ ଖୋରାକି ହୋଇଯାଉଛି । ସକାଳ ଛଅଟାରୁ ରାତି ବାରଟା ପର୍ଯ୍ୟନ୍ତ ପରିଶ୍ରମ କରିବାରୁ ଦେହ ସୁସ୍ଥ

ରହୁଛି ଏବଂ ମନ ଚିନ୍ତାମୁକ୍ତ ମଧ୍ୟ ରହୁଛି । ଏଠାରେ ଗଙ୍ଗାକୂଳରେ ସାଧୁ-ମହାତ୍ମାମାନଙ୍କର ସାନ୍ନିଧ୍ୟ ଲାଭ ହେବାରୁ ସତରେ ବହୁତ ଆନନ୍ଦରେ ରହୁଛି ।

ସନ୍ନ୍ୟାସୀ ଜଣକ ସେଠାରେ ପ୍ରସାଦ ପାଇସାରି ହରନାମକୁ ପ୍ରଣାମ କଲେ ଏବଂ କହିଲେ ଆପଣ ବାସ୍ତବରେ ସୁଖ ଏବଂ ଦୁଃଖରେ ଜଣେ ସମଭାବାପନ୍ନ ବ୍ୟକ୍ତି ।

୧୯୬୧ ମସିହାରେ ହରନାମ ଦାସର ମୃତ୍ୟୁ ହେଲା । ମୋର ମିତ୍ର ସ୍ୱର୍ଗୀୟ ଶ୍ରୀରାମ ଶର୍ମା (ସମ୍ପାଦକ ବିଶାଳ ଭାରତ)-ଙ୍କ ଘରେ ଥରେ ଦୁଇଥର ତାଙ୍କ ସହ ଭେଟ ହୋଇଥିଲା । ଗରିବ ହେଲେ ମଧ୍ୟ ତାଙ୍କର ପୂର୍ବପରି ଉଦାର ସ୍ୱଭାବ ଥିଲା । ଗୋଟିଏ ଦୁଇଟି କମ୍ବଳ ବା କୋଟ୍ ଅଧିକ ହେଲେ ସେ କୌଣସି ଗରିବଙ୍କୁ ଦାନ କରି ଦେଉଥିଲେ । ଖୁବ୍ ଶୀତ ପଡ଼ିଲେ ଯାଇ ସେ ପୁଣି କୋଟ୍ କିଣୁ ଥିଲେ । କେବେହେଲେ ତାଙ୍କ ଠାରେ ଦୀନତା ପ୍ରକାଶ ପାଉ ନଥିଲା ।



# ତୋଡରମଲ୍ଲ

ପ୍ରାୟ ଗ୍ଚାରିଶହ ବର୍ଷ ତଳର ପୁରୁଣା କଥା । ପ୍ରତାପୀ ସମ୍ରାଟ ଆକବରଙ୍କ ଶାସନ–ତାଙ୍କ ମନ୍ତ୍ରୀ ମଣ୍ଡଳରେ ୯ ଜଣ ବିଶିଷ୍ଟ ମନ୍ତ୍ରୀଙ୍କୁ ନବରତ୍ନ କୁହାଯାଉଥିଲା । ସେମାନଙ୍କ ମଧ୍ୟରେ ତୋଡରମଲ୍ଲଙ୍କ ବିଶେଷ ଆଦରପୂର୍ଣ୍ଣ ସ୍ଥାନ ଥିଲା । ସେ ବିତ୍ତ ଓ ଅର୍ଥନୈତିକ କାନୁନ ବିଭାଗ ଦେଖୁଥିଲେ । ରାଜ୍ୟର କାମରେ ତାଙ୍କୁ ପ୍ରାୟତଃ ପଂଜାବ, ସିନ୍ଧ୍ ଓ କାଶ୍ମୀର ଯିବାକୁ ପଡୁଥିଲା ।

ଆଗ୍ରା ଠାରୁ ୨୦୦ ମାଇଲ୍ ଦୂର ରାଜସ୍ଥାନର ସୀମାରେ ନାରନୌଲ ନାମକ ଗୋଟିଏ ବଡ଼ ଜନବସତି ଥିଲା । ସେଠାରେ ଅଗ୍ରୱାଲ ସଂପ୍ରଦାୟର ଗୋଟିଏ ବଡ଼ ଧନୀ ଓ ପ୍ରତିଷ୍ଠିତ ପରିବାର ଥିଲା । ଟୋଡରମଲ୍ଲଙ୍କର ଏହି ପରିବାର ସହ ମିତ୍ରତା ଥିଲା । ସେ ବିଭିନ୍ନ ଅଞ୍ଚଳରୁ ଯିବା ଆସିବା କରିବା ସମୟରେ ସେଠାରେ ଦିନେ ଦୁଇଦିନ ବିଶ୍ରାମ କରିବା ପାଇଁ ରହି ଯାଉଥିଲେ ।

ଥରେ ୨/୩ ବର୍ଷ ପର୍ଯ୍ୟନ୍ତ ନାରନୌଲ ଆସି ନଥିଲେ । ଇତିମଧ୍ୟରେ ସେଇ ପରିବାର ଉପରେ ବିପତ୍ତି ପଡ଼ିଗଲା । ଶେଠଙ୍କର ଦେହାନ୍ତ ହୋଇଗଲା । ସବୁ ଧନ ସମ୍ପତ୍ତି ମୁନିମ୍‌ମାନଙ୍କର ବଦଖର୍ଚ୍ଚ ଓ ବେହିସାବରେ ସମାପ୍ତ ହୋଇଗଲା । ଘରେ  ରହିଗଲେ କେବଳ ବିଧବା ଶେଠାଣୀ ଓ ତାଙ୍କର ୧୫ ବର୍ଷର ପୁଅ ।

ସେ ସମୟରେ ଖୁବ୍ ଅଳ୍ପ ବୟସରୁ ପିଲାଙ୍କର ବିବାହ କରାଯାଉଥିଲା । ଶେଠଜୀଙ୍କ ଜୀବିତାବସ୍ଥାରେ ପୁଅର ନିର୍ବନ୍ଧ ନିକଟବର୍ତ୍ତୀ ଏକ ବଡ଼ ଗାଁର ସଂପନ୍ନ ଓ ସ୍ୱଜାତୀୟ ପରିବାରରେ ହୋଇଯାଇଥିଲା । ବର୍ତ୍ତମାନ ସେ ବିବାହ ଯୋଗ୍ୟ ହୋଇଗଲା । ଝିଅପକ୍ଷ ବରପକ୍ଷର ଦୁର୍ଦ୍ଦଶା ବିଷୟରେ ଜାଣିଥିଲେ । ସେ ସମୟରେ ପର୍ଯ୍ୟାପ୍ତ କାରଣ ନଥିଲେ ଲୋକେ କୌଣସି ସଂବନ୍ଧ ଭାଂଗୁ ନଥିଲେ । ସମୟ ସମୟରେ ସଂବନ୍ଧ ଭାଂଗି ଯିବା ପରେ ବରପକ୍ଷ ନିଜର ଭାଇବନ୍ଧୁ ମିତ୍ରଙ୍କ ସହିତ ଅସ୍ତ୍ରଶସ୍ତ୍ର ନେଇ ବରଯାତ୍ରୀ ଭାବରେ ଯାଉଥିଲେ ଓ ଯୁଦ୍ଧରେ ଜିତି ବୋହୂକୁ ନେଇ ଫେରୁଥିଲେ ।

କନ୍ୟାପକ୍ଷ ବସ୍ତାଏ ଖଣ୍ଡେ ଗୁଆ ନାରନୌଲ ପଠାଇ ଲେଖିଲେ ଯେ ଅତିକମ୍‌ରେ ଏତିକି ଜଣ ପ୍ରତିଷ୍ଠିତ ବରଯାତ୍ରୀ ନେଇ ଆସନ୍ତୁ। ବିବାହ ଫାଲ୍‌ଗୁନ ମାସରେ ହେବ। ଉଭୟ ପକ୍ଷର ସମ୍ମାନ ଦେଖାଯିବ। ବର ହାତୀ ପିଠିରେ ବସି ଆସିବ। ଅତିକମ୍‌ରେ ୨/୩ଟି ହାତୀ ଶୋଭାଯାତ୍ରାରେ ରହିବା ସୁନ୍ଦର ହେବ।

ଶେଠାଣୀ ବୁଦ୍ଧିମତୀ ଥିଲେ। ସେ ବୁଝି ପାରିଲେ ଯେ ଶହ ଶହ ବ୍ୟକ୍ତିଙ୍କ ପାଇଁ ରଥ, ଘୋଡ଼ା, ଓଟ ଆବଶ୍ୟକ ପଡ଼ିବ। ଯିବା ଆସିବା ସମୟରେ ସେମାନଙ୍କ ଭୋଜନ ଓ ପଶୁମାନଙ୍କ ପାଇଁ ଦାନା ପାଣିର ବନ୍ଦୋବସ୍ତ କରିବାକୁ ପଡ଼ିବ। ଏ ସବୁ ଯୋଗାଡ଼ କରିବା ଏବେ ତାଙ୍କ ପକ୍ଷେ ସମ୍ଭବ ନୁହେଁ। ପରିବାର ଓ ମିତ୍ରଙ୍କୁ ଡାକି ଆଲୋଚନା କରାଗଲା। କିନ୍ତୁ କିଛି ଉପାୟ ଦେଖାଗଲା ନାହିଁ।

ଶେଠାଣୀ ଏପରି ଚିନ୍ତାଗ୍ରସ୍ତ ଥିବା ସମୟରେ ତୋଡରମଲ୍ଲ ପଞ୍ଜାବ ଯାତ୍ରା କ୍ରମରେ ତାଙ୍କ ଗାଁରେ ରହିଲେ। ସେ ସମୟରେ ଉତ୍ତରଭାରତରେ ପର୍ଦ୍ଦା ପ୍ରଥା ଥିଲା। ଶେଠାଣୀ ତୋଡ଼ରମଲ୍ଲଙ୍କ ଧରମ ଭଉଣୀ–ସେ ତାଙ୍କୁ ପର୍ଦ୍ଦା କରୁ ନଥିଲେ ଓ କଥାବାର୍ତ୍ତା କରୁଥିଲେ। ତୋଡରମଲ୍ଲ ଜାଣିପାରିଲେ ଯେ ଭଉଣୀ ବହୁତ ଦୁଃଖରେ ଅଛି। କାରଣ ପଗ୍ଚରନ୍ତେ ସେ କିଛି ନ କହି କେବଳ କାନ୍ଦିବାକୁ ଲାଗିଲେ। କିଛି ସମୟ ପରେ ଆଶ୍ୱସ୍ତ ହୋଇ କହିଲେ ଯେ କନ୍ୟାପକ୍ଷ ବହୁତ ଧନୀ ଏବଂ ସେମାନେ ଏବେ ଏ ସଂବନ୍ଧ ଭାଂଗିବାର ଯୋଜନାରେ ଅଛନ୍ତି। ସିଧା କହିଲେ ତାଙ୍କର ବଦନାମି ହେବ, ତେଣୁ ଏପରି ସର୍ତ୍ତ ରଖିଛନ୍ତି ଯାହା ଦ୍ୱାରା ଆମେ ସଂବନ୍ଧ ଭାଂଗିଦେବୁ। ଆଜି ଆମର ଏପରି ଦଶା ଯେ ଆମର ବାଗ୍‌ଦତ୍ତା ବୋହୂକୁ ଛାଡ଼ିବାକୁ ପଡୁଛି।

ସବୁକଥା ଶୁଣିବା ପରେ ତୋଡରମଲ୍ଲ ଭଉଣୀଙ୍କୁ ନିଶ୍ଚିନ୍ତ ରହିବାକୁ କହିଲେ। ଯାହା ଉତ୍ତର କନ୍ୟାପକ୍ଷକୁ ଦିଆଯିବ ସେ ପଠାଇବେ। କିଛି ଦିନ ପରେ କନ୍ୟାପକ୍ଷଙ୍କ ପାଖରେ ଗୋଟିଏ ମୁଗବସ୍ତା ନେଇ ପତ୍ରବାହକ ପହଂଚିଲେ। ପତ୍ରରେ ଯଥାଯୋଗ୍ୟ ଅଭିବାଦନ ପରେ ଲେଖାଥିଲା ବିବାହର ତିଥି ମଞ୍ଜୁର। ଉଭୟ ପକ୍ଷର ସମ୍ମାନ ଦୃଷ୍ଟିରୁ ଆମେ ମୁଗବସ୍ତାର ମୁଗ ଯେତିକି, ସେତିକି ବରଯାତ୍ରୀ ନେଇ ପହଞ୍ଚିବୁ। ସ୍ୱର୍ଗୀୟ ଶେଠଜୀଙ୍କର ଜୟପୁରରୁ ଆଗ୍ରା ପର୍ଯ୍ୟନ୍ତ ବହୁତ ଲୋକଙ୍କ ସହିତ ସ୍ନେହ ସଂପର୍କ। ତାଙ୍କର

ଏକମାତ୍ର ପୁତ୍ରର ବିବାହରେ ଆମେ ସେମାନଙ୍କୁ କିପରି ଭୁଲିଯିବୁ । ଆପଣ ବରଯାତ୍ରୀରେ ଥିବା ସମ୍ମାନନୀୟମାନଙ୍କୁ ଯଥେଷ୍ଟ ସମ୍ମାନ ଦେବେ । ଆମେମାନେ ବରଯାତ୍ରୀ ନେଇ ଅମୁକଦିନ ପହଞ୍ଚିବୁ । ଆପଣ ସମସ୍ତ ବନ୍ଦୋବସ୍ତ କରିଥିବେ ।

ପତ୍ର ପଠନାନ୍ତେ ମୁଗ ଗଣା ହେଲା–ପ୍ରାୟ ୨ ହଜାର । ସେମାନେ ମନେ ମନେ ହସୁଥିଲେ କି ଶେଠାଣୀ ବୋଧ ହୁଏ ଦୁଃଖରେ ପାଗଳ ହୋଇ ଗଲେଣି । ଏତେ ବରଯାତ୍ରୀ ପାଇଁ ଯେତକ ହାତୀ, ଘୋଡ଼ା, ଓଟ, ରଥ ଦରକାର ତାହା ଜଣେ ନଗରଶ୍ରେଷ୍ଠ ମଧ୍ୟ ଯୋଗାଡ଼ କରିପାରିବେ ନାହିଁ । ରାସ୍ତାରେ ଯିବା ଆସିବା ସମୟରେ ତାଙ୍କର ଖାଇବା ପିଇବା ଓ ବିଶ୍ରାମ କରିବାର ବନ୍ଦୋବସ୍ତରେ ଲକ୍ଷାଧିକ ଟଙ୍କା ଖର୍ଚ୍ଚ ହେବ । ଯାହା ହେଉ, ପତ୍ରବାହକ ହାତରେ ଉତ୍ତର ଦେଲେ କି ଆମକୁ ଆପଣଙ୍କ ସର୍ତ୍ତ ମଂଜୁର । ବରଯାତ୍ରୀଙ୍କ ସମ୍ମାନ ପାଇଁ ଆମେ ପ୍ରସ୍ତୁତ । ଶୁଭଦିନର ପ୍ରତୀକ୍ଷାରେ ରହିଲୁ ।

ଆଗ୍ରାକୁ ଫେରି ତୋଡରମଲ୍ଲ ନିଜ ବଂଧୁ ଓ ସାଥୀମାନଙ୍କ ସଂଗେ ଆଲୋଚନା କଲେ । ବାଦଶାହଙ୍କୁ ଦରଖାସ୍ତ କଲେ କି ମୋ ଭଣଜାର ବରଯାତ୍ରୀଦଳ ଯିବ । ସେଥିପାଇଁ ୫୦ ଟି ହାତୀ, ୫୦୦ ଘୋଡ଼ା ଓ ହଜାରେ ରଥ ଓ ଓଟ ଦରକାର । ଏମାନଙ୍କ ସଂଗରେ ରାଜକୀୟ ବାଦ୍ୟ ଓ ତୋପ ମଧ୍ୟ ଯିବ । ବଡ଼ ବଡ଼ ରାଜା, ଧନିକ, ସରଦାର ଓ ବଡ଼ ଅଫିସରମାନଙ୍କୁ ବରଯାତ୍ରୀ ପାଇଁ ନିମନ୍ତ୍ରଣ ଦିଆଗଲା । ରାସ୍ତାରେ ଜଳଖିଆ ଆଦି ବ୍ୟବସ୍ଥା ପାଇଁ ଶହ ଶହ ପରିଗ୍ରହକଙ୍କୁ ଆଗରୁ ପଠାଗଲା । ନାରନୌଲ ପହଞ୍ଚି ତୋଡରମଲ୍ଲ ଲକ୍ଷେ ଟଙ୍କାର ଉପହାର ଭଉଣୀ ପାଖକୁ ପଠାଇଲେ । ସେ ତାଙ୍କ ଭଉଣୀ ଓ ଭଉଣୀର ପୁଅ ଓ ବୋହୂ ପାଇଁ ଅନେକ ପ୍ରକାର ମୂଲ୍ୟବାନ୍ ଗହଣା ଓ ସୁନ୍ଦର ସୁନ୍ଦର ମୂଲ୍ୟବାନ୍ ପଥର ଖଚିତ ପୋଷାକ ଆଣିଥିଲେ । ପୁଣି ବରପକ୍ଷର ଲୋକଙ୍କ ପାଇଁ ମଧ୍ୟ ବହୁ ପରିମାଣରେ ପଗଡ଼ି ଓ ଉପହାର ସାମଗ୍ରୀ ଆଣିଥିଲେ ।

ବର ନାରନୌଲରୁ ବାହାରିବା ସମୟରେ ଖବର ବ୍ୟାପିଗଲା ଯେ ଏପରି ପ୍ରସେସନ୍ ଦେଖା ନଥିଲା କି ଶୁଣାଯାଇ ନଥିଲା । ଘୋଡ଼ା, ରଥ, ପାଲିଙ୍କି, ଓଟ, ହାତୀ, ପଦାତିକମାନଙ୍କର ଲମ୍ବା ଧାଡ଼ି ମାଇଲ ମାଇଲ ଲମ୍ବିଥିଲା । ଏମାନଙ୍କ ସଂଗରେ ରାନ୍ଧୁଣିଆ, ସେବକ, ସଇସ, ମାହୁନ୍ତ ମିଶି ହଜାରେ ହେବେ ।

ବରଯାତ୍ରୀ ୨ ହଜାର ଥିଲେ । ଆହୁରି ମଧ୍ୟ ବାଜାବାଲା, ଗାୟକ ଓ ନର୍ତ୍ତକୀମାନେ ରାସ୍ତାରେ ମନୋରଞ୍ଜନ କରିବା ପାଇଁ ସଂଗରେ ଥିଲେ ।

କନ୍ୟାପକ୍ଷ ଯେତେବେଳେ ଜାଣିଲେ ଯେ ବରପକ୍ଷରେ ଜୟପୁରର ମହାରାଜ ମାନସିଂହ, ଅର୍ଥମନ୍ତ୍ରୀ ତୋଡରମଲ୍ଲ, ଖାଦ୍ୟମନ୍ତ୍ରୀ ଅବଦୁଲ ରହିମ, ବିଶିଷ୍ଟ ବିଦୁଷକ ବୀରବଲ ଓ ଅନ୍ୟ ସବୁ ବିଶିଷ୍ଟ ବ୍ୟକ୍ତି ଏବଂ ସେମାନଙ୍କ ସଂଗରେ ବହୁ ସଂଖ୍ୟାରେ ହାତୀ, ଘୋଡ଼ା, ଓଟ ଇତ୍ୟାଦି ପଶୁ ଆସୁଛନ୍ତି– ସେମାନେ ବ୍ୟସ୍ତ ହୋଇପଡ଼ିଲେ । ଯଦିଓ ସେ ନଗରଶେଠ ଓ ଲକ୍ଷପତି, ତଥାପି ଏତେ ବଡ଼ ବରଯାତ୍ରୀର ବ୍ୟବସ୍ଥା କରିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ ।

କନ୍ୟାପିତା ତାଙ୍କ ସଂଗେ କେତେକ ପ୍ରତିଷ୍ଠିତ ବ୍ୟକ୍ତିଙ୍କୁ ନେଇ ବରପକ୍ଷକୁ ଦେଖା କଲେ । ତୋଡରମଲ୍ଲଙ୍କ ପାଦତଳେ ନିଜର ପଗଡ଼ି ରଖି ହାତ ଯୋଡ଼ି କହିଲେ, “ବର ପରିବାରଙ୍କର ଦୁଃଖ ସମୟରେ ଆମେମାନେ



ତାଙ୍କୁ ସାହାଯ୍ୟ କରିଲୁ ନାହିଁ, ବରଂ ତାଙ୍କୁ ଅପମାନ କରି ବିବାହ ଭାଂଗିବାର ଯୋଜନା କରୁଥିଲୁ । ମୁଁ ଏତେ ବରଯାତ୍ରୀ ଓ ପଶୁମାନଙ୍କର ଖାଦ୍ୟ ପାନୀୟ ବନ୍ଦୋବସ୍ତ କରି ପାରିବି ନାହିଁ । ମୁଁ ଏ ଅଂଚଳରେ ମୋର ଆତିଥ୍ୟ ପାଇଁ

ଅନେକ ଦିନରୁ ପରିଚିତ, ଏଠାରେ ମୋର ବନ୍ଧୁ ଓ ଶତ୍ରୁ ଉଭୟ ଅଛନ୍ତି। ଯଦି ମୁଁ ଆପଣମାନଙ୍କୁ ଯଥାଯୋଗ୍ୟ ସମ୍ମାନ ଦେଇ ନପାରେ, ତେବେ ଶତ୍ରୁମାନେ ଭବିଷ୍ୟତରେ ମୋତେ ଅପମାନିତ କରିବେ। ମୋ ସାନଭାଇ କନ୍ୟାଦାନ ଇତ୍ୟାଦି କରିବ। ମୁଁ ଯାଇ ଗୋପନରେ କେଉଁଠି ରହିବି, ଯାହା ଦ୍ୱାରା ମତେ ଅପମାନିତ ହେବାକୁ ପଡ଼ିବ ନାହିଁ।''

ତୋଡରମଲ୍ଲ ତାଙ୍କୁ ପାଦତଳୁ ଉଠାଇଲେ ଏବଂ କହିଲେ–''ଅତୀତ କଥା ଭୁଲିଯାଅ। ବର୍ତ୍ତମାନ ତୁମେ ଆମର ବନ୍ଧୁ, ଆମର କର୍ତ୍ତବ୍ୟ ହେବ ତୁମର ସମ୍ମାନରକ୍ଷା। ଚିନ୍ତା କର ନାହିଁ। କେହି କିଛି ଜାଣିବେ ନାହିଁ। ସବୁ ବ୍ୟବସ୍ଥା ଆମ ତରଫରୁ ହେବ, ତୁମେ କେବଳ ସମସ୍ତଙ୍କୁ ସରବତ ପିଆଇ ଭଲ କରି ସମ୍ମାନ କରିବ।''

ଆଖପାଖ ଗାଁର ହଜାର ହଜାର ଲୋକ ଆଗ୍ରାର ବିଶିଷ୍ଟ ନର୍ତ୍ତକ ନର୍ତ୍ତକୀଙ୍କର ନୃତ୍ୟ ଦେଖିଲେ ଓ ସଂଗୀତକାରଙ୍କ ସଂଗୀତ ଗାୟନ ଶୁଣିଲେ। ସେମାନେ ପ୍ରସେସନ୍, ବାଣଫୁଟା ଦେଖି ଖୁସି ହେଲେ। ବାଣର ଆଲୋକରେ ରାତ୍ରିର ଆକାଶ ଉଜ୍ଜ୍ୱଳମୟ ହୋଇ ଉଠୁଥିଲା। ବିବାହ କାର୍ଯ୍ୟ ବହୁ ଆଡ଼ମ୍ବରରେ ସଂପନ୍ନ ହେଲା।

ଯେତେବେଳେ ତୋଡରମଲ୍ଲ ନବବିବାହିତ ବରବଧୂଙ୍କୁ ନେଇ ନାରନୌଲ ପହଞ୍ଚିଲେ, ବରପକ୍ଷର ସ୍ତ୍ରୀଲୋକମାନେ ତୋଡରମଲ୍ଲଙ୍କ ପ୍ରଶଂସାରେ ପଞ୍ଚମୁଖ ହୋଇ ଗୀତ ଗାଇଲେ।

ଏପର୍ଯ୍ୟନ୍ତ ବିବାହ ଉତ୍ସବମାନଙ୍କରେ ରାଜସ୍ଥାନୀମାନେ ତୋଡରମଲ୍ଲଙ୍କ ପ୍ରଶଂସା ସୂଚକ ଗୀତ ଗାଆନ୍ତି, ଯେଉଁଥିରେ ଭାଇର ଭଉଣୀ ପ୍ରତି ସ୍ନେହ ଓ ପାରିବାର ପଣିଆ ଥାଏ।



# ମାତୃଦର୍ଶନ

୧୬୫୭ ମସିହାର ଅକ୍ଟୋବର ମାସ । ଏହି ମଧୁର ସମୟର ଏକ ମନୋରମ ସନ୍ଧ୍ୟା । ଶିବାଜୀ ଭବାନୀଦେବୀଙ୍କ ମନ୍ଦିରରୁ ଫେରିବା ବେଳେ ହଠାତ୍ ଏକ ଅଦ୍ଭୁତ ଦୃଶ୍ୟ ଦେଖି ଚମକି ପଡ଼ିଲେ । ଦେଖିଲେ, ବହୁତ ଗୁଡ଼ିଏ ଖଚର ପିଠିରେ ଏବଂ ଶଗଡ଼ରେ ଧନରତ୍ନ, ହୀରା-ନୀଳା, ମୋତି-ମାଣିକ, ସୁନା-ରୂପା ବୋଝେଇ ହୋଇ ଆଗେଇ ଆସୁଛି । ଗାଡ଼ିଗୁଡ଼ିକ ଦୁର୍ଗ ଆଡ଼କୁ ଯାଉଛି ।

ସଂଗରେ ଥିବା ମୋରୋପନ୍ତ ରାଜାଙ୍କର ଜିଜ୍ଞାସାର ସମାଧାନ କରି କହିଲେ, ‘‘ଅମ୍ବାଜୀ ସୋନଦେବ କଲ୍ୟାଣର ସୁବା ଉପରେ ଆକ୍ରମଣ କରି ଏହି ଲୁଟ୍ ସାମଗ୍ରୀ ନେଇ ଆସିଛନ୍ତି ।’’

ଅମ୍ବାଜୀଙ୍କୁ ଆନନ୍ଦରେ କୁଣ୍ଢେଇ ପକାଇଲେ ଶିବାଜୀ ଏବଂ ତାଙ୍କୁ ତାଙ୍କର ଗଳାର ବହୁମୂଲ୍ୟ ହାର ଉପହାର ଦେଲେ । ସେ ବିସ୍ମିତ ହୋଇଗଲେ କି କଲ୍ୟାଣର ଶକ୍ତିଶାଳୀ ସୁବେଦାରକୁ ଏତେ ସହଜରେ କିପରି ପରାସ୍ତ କରାଗଲା!

‘‘ସାବାସ୍ ଅମ୍ବାଜୀ! ତୁମର ସ୍ୱାମୀଭକ୍ତି ଓ ବୀରତ୍ୱ ପାଇଁ ମୁଁ ଗର୍ବିତ ।’’ ଏହି ସମୟରେ ଗୋଟିଏ ପାଲିଙ୍କିକୁ ଦେଖି ପଚାରିଲେ– ‘‘ଏଥିରେ କିଏ ଅଛି?’’

ଅମ୍ବାଜୀ ହସି ହସି କହିଲେ, ‘‘ଏହି ପାଲିଙ୍କିରେ ଅଛନ୍ତି କଲ୍ୟାଣର ସର୍ବଶ୍ରେଷ୍ଠ ସୁନ୍ଦରୀ ‘ସଲମା’ ଯେ କି ମୁଲ୍ଲା ଅହମ୍ମଦର ପୁତ୍ରବଧୂ । ସଲମାଙ୍କ ସୌନ୍ଦର୍ଯ୍ୟ ସମଗ୍ର ମହାରାଷ୍ଟ୍ରରେ ବିଖ୍ୟାତ । ସଲମାଙ୍କ କ୍ରୂର ଶ୍ୱଶୁର ଶହ ଶହ ହିନ୍ଦୁ ନାରୀଙ୍କର ସମ୍ମାନ ସହିତ ଖେଳିଛି । ବର୍ତ୍ତମାନ ଆମକୁ ତା’ର ପ୍ରତିଶୋଧ ନେବାର ସୁଯୋଗ ମିଳିଛି ।’’

ଅମ୍ବାଜୀ ତାଙ୍କ ସଫଳତାରେ ଉତ୍ଫୁଲ୍ଲ ହୋଇ ଉଠୁଥିଲେ । କିନ୍ତୁ ଶିବାଜୀ ବିଚଳିତ ହୋଇ ପଡ଼ିଲେ । ସେ ଚକ୍ଷୁ ବନ୍ଦ କରି ନିଜର ବାଲ୍ୟକାଳର ଚିତ୍ର ଦେଖିବାକୁ ଲାଗିଲେ । ତାଙ୍କ ପିତା ଶାହାଜୀ ବୀଜାପୁର ସୁଲତାନଙ୍କ ପାଖରେ ଜାଗିରଦାର ଓ ଜଣେ ଶ୍ରେଷ୍ଠ ସେନା ଅଧିକାରୀ ଥିଲେ । ୩ ହଜାର ମରାଠା ଅଶ୍ୱାରୋହୀ ଓ ପଦାତିକ ସୈନିକ ତାଙ୍କ ନିଜର ଥିଲା । ତାଙ୍କ ମା ଜୀଜାବାଈ କର୍ତ୍ତବ୍ୟପରାୟଣା, ସାହସିନୀ ଓ ଧର୍ମପରାୟଣା ଥିଲେ,

କିନ୍ତୁ ଭଗବାନ ତାଙ୍କୁ ସୌନ୍ଦର୍ଯ୍ୟ ଦେଇ ନଥିଲେ ।

ଶାହାଜୀ ୩୦ ବର୍ଷ ବୟସରେ ତୁକାବାଇ ନାମକ ଯୁବତୀଙ୍କୁ ବିବାହ କରି ତାଙ୍କ ସଙ୍ଗେ ବାଙ୍ଗାଲୋରରେ ରହିବାକୁ ଲାଗିଲେ । ୧୬୨୬ ମସିହାରେ ସେ ଜୀଜାବାଇଙ୍କୁ ଶିଭନ୍ ଦୁର୍ଗକୁ ପଠାଇ ଦେଲେ । ସନ୍ତାପିତା ଜୀଜାବାଇ ତାଙ୍କର ସମସ୍ତ ସ୍ନେହ ବାଳକ ଶିବା ଉପରେ ଢାଳିଦେଲେ ଓ ଧୈର୍ଯ୍ୟ ସହ ଦିନ କାଟିବାକୁ ଲାଗିଲେ ।

ସୌଭାଗ୍ୟବଶତଃ ଶିବାଜୀଙ୍କର ପିତାମହ କୋଣଦେବ ତାଙ୍କର ରକ୍ଷଣାବେକ୍ଷଣ କଲେ ଓ ସମର୍ଥ ଗୁରୁ ରାମଦାସଙ୍କର ମାର୍ଗଦର୍ଶନ ତାଙ୍କୁ ମିଳିଲା । ଏଥିପାଇଁ ଶିବାଙ୍କୁ ସଦ୍‌ଗୁଣ ଓ ସଂସ୍କାର ମିଳିଲା । ସାହସ ଓ ବୀରତା ତଥା ଧର୍ମ ପ୍ରତି ଆସ୍ଥା ତାଙ୍କ ମଧ୍ୟରେ ଦେଖିବାକୁ ମିଳିଲା ।

ସେ କାଳରେ ବିବାହ କାର୍ଯ୍ୟ ବାଲ୍ୟାବସ୍ଥାରେ ସଂପନ୍ନ ହେଉଥିଲା । ତାଙ୍କୁ ୧୪ ବର୍ଷ ହୋଇଥିବା ସମୟରେ ଜୀଜାବାଇ ସ୍ୱାମୀଙ୍କୁ ପୁତ୍ରର ବିବାହ ବିଷୟରେ ପତ୍ର ଲେଖିଲେ । ଶାହାଜୀ ମାତା ପୁତ୍ରଙ୍କୁ ବାଙ୍ଗାଲୋର ନିବାସକୁ ଡକାଇଲେ । ସେଠାରେ ବିମାତା ତୁକାବାଇ ଜୀଜାବାଇଙ୍କୁ ବିଭିନ୍ନ ଭାବରେ ଅପମାନିତ କଲେ । ଜୀଜାବାଇ ବିଗତ ୧୨ ବର୍ଷର ତପସ୍ୟା ଫଳରେ ନିଜକୁ ସଂଯତ କରି ପାରିଲେ ।

ସେ ଶାହାଜୀଙ୍କୁ କେବଳ ଏତିକି କହିଲେ, "ଆପଣଙ୍କ ସୁଖରେ ମୋର ସୁଖ । ଆପଣଙ୍କର ସମସ୍ତ ଧନ ଓ ଜାଗିରୀ ତୁକାବାଇ ଓ ତା' ପୁତ୍ର ବ୍ୟଙ୍କୋଜୀଙ୍କୁ ଦେଇ ଦିଅନ୍ତୁ । ଶିବାକୁ କେବଳ ପୁନା ଗାଁ ଦିଅନ୍ତୁ । ଯଦି ତା'ର ଯୋଗ୍ୟତା ଥିବ ସେ ତାହାକୁ ବଢ଼ାଇବ ।"

ଏହିପରି ଭାବରେ ପନ୍ଦର ବର୍ଷ ବୟସରେ ଶିବାଜୀ ପୁନାର ଜାଗିରିଦାର ହେଲେ । ସେ ଅଶ୍ୱାରୋହୀମାନଙ୍କୁ ନେଇ ଗୋଟିଏ ଛୋଟ ଦଳ ତିଆରି କଲେ ଓ ସୁବିଧା ଦେଖି ଆଖ ପାଖ ଅଂଚଳରେ ଅଧିକାର ଜମାଇଲେ । ମୁସଲମାନ ସୁଲତାନ ଓ ଅଧିକାରୀମାନଙ୍କ ଅତ୍ୟାଗ୍ରହରେ ଲୋକମାନେ ବହୁତ ଦୁଃଖୀ ଥିଲେ, ତେଣୁ ତାଙ୍କର ବିରୋଧ ହେଲା ନାହିଁ । ଶିବାଜୀ ଲୁଟ୍‌ର ସାମଗ୍ରୀ ଆଣି ମା'ଙ୍କ ସମ୍ମୁଖରେ ରଖିଦିଅନ୍ତି । ତାହାର ଏକ ତୃତୀୟାଂଶ ସୈନିକମାନଙ୍କୁ ଦିଆଯାଉଥିଲା । କିଛି ଅଂଶ ଜୀର୍ଣ୍ଣଶୀର୍ଣ୍ଣ ମନ୍ଦିରମାନଙ୍କର ପୁନରୁଦ୍ଧାର, ପୁଷ୍କରିଣୀ ଓ କୂପ ଖନନରେ ବ୍ୟବହୃତ ହେଉଥିଲା; ଆଉ ବଳକା ଅର୍ଥ ଉତ୍ତମ ଘୋଡ଼ା

ଓ ନୂତନ ଅସ୍ତ୍ରଶସ୍ତ୍ର କିଣିବା ପାଇଁ ବ୍ୟବହୃତ ହେଉଥିଲା ।

ସବୁଦିଗରୁ ଶକ୍ତିଶାଳୀ ହୋଇ ମଧ୍ୟ ସେ ନିଜକୁ ଗୁରୁ ରାମଦାସଙ୍କ ସେବକ ମାନୁଥିଲେ । ତାଙ୍କର ପତାକାର ବର୍ଣ୍ଣ ଗୈରିକ ଥିଲା । ୧୬୫୭ ରେ ତାଙ୍କୁ ମାତ୍ର ତିରିଶ ବର୍ଷ ବୟସ ହୋଇଥିଲା । କିନ୍ତୁ ଏଇ ସମୟ ମଧ୍ୟରେ ମହାରାଷ୍ଟ୍ରର ବହୁତ ଦୁର୍ଗକୁ ଅଧିକାର କରି ପାରିଥିଲେ । ୨୦ ହଜାର ସୁସଜ୍ଜିତ ମରାଠୀ ବୀର ତାଙ୍କର ସେନାବାହିନୀରେ ଥିଲେ । ଗୋଟିଏ ବିରାଟ ଛଞ୍ଚାଣ ପରି ଶତ୍ରୁସୈନ୍ୟଙ୍କୁ ଆକ୍ରମଣ କରୁଥିଲେ ଓ ଯାହା ପାଉଥିଲେ ଲୁଟ୍ କରି ନିଜର ଅଭେଦ୍ୟ ରାୟଗଡ଼ ଦୁର୍ଗକୁ ନେଇ ଆସୁଥିଲେ । ଶିବାଜୀଙ୍କ ନାମ ଶୁଣିବା ମାତ୍ରେ ଅସ୍ତ୍ରଶସ୍ତ୍ର ଫୋପାଡ଼ି ଦେଇ ଶତ୍ରୁପକ୍ଷର ଲୋକମାନେ ପଳାୟନ କରୁଥିଲେ ।

ଯୁଦ୍ଧକ୍ଷେତ୍ରରେ ବ୍ୟସ୍ତ ରହୁଥିଲେ ମଧ୍ୟ ତାଙ୍କ ମାତାଙ୍କ ଠାରୁ ଶିବାଜୀଙ୍କୁ ଧାର୍ମିକ ପ୍ରେରଣା ମିଳୁଥିଲା । ତାଙ୍କର ହିନ୍ଦୁଧର୍ମରେ ଗଭୀର ବିଶ୍ୱାସ ଥିଲା । ତା' ସତ୍ତ୍ୱେ ସେ ଅନ୍ୟ ଧର୍ମକୁ କେବେ ନିନ୍ଦା କରୁନଥିଲେ । ସେ ମସ୍‌ଜିଦ୍ ଓ ଚର୍ଚ୍ଚକୁ ଆକ୍ରମଣ କରୁ ନଥିଲେ । ଭଗ୍ନ ମସ୍‌ଜିଦ୍‌ଗୁଡ଼ିକ ନବୀକରଣ କରୁଥିଲେ । ସେ ସେନାପତିମାନଙ୍କୁ ଆଦେଶ ଦେଇଥିଲେ ଯେ ସେମାନେ କୌଣସି ଧର୍ମସ୍ଥଳକୁ କ୍ଷତିଗ୍ରସ୍ତ କରିବେ ନାହିଁ ଓ ଶତ୍ରୁପକ୍ଷର ସ୍ତ୍ରୀମାନଙ୍କର ଅସମ୍ମାନ କରିବେ ନାହିଁ ।

ଶିବାଜୀ ସସମ୍ମାନେ ଅମ୍ବାଜୀ ଆଣିଥିବା ପାଲିଙ୍କି ଆଡ଼କୁ ଆଗେଇଲେ ଏବଂ ତା' ମଧ୍ୟରେ ଏକ ପରମ ସୁନ୍ଦରୀ ନାରୀକୁ ଦେଖିଲେ । ଏପରି ଅନିନ୍ଦ୍ୟ ସୁନ୍ଦରୀ ନାରୀ ସେ ପୂର୍ବରୁ କେବେ ଦେଖି ନଥିଲେ । ସୁନ୍ଦର ଗହଣା ମଣ୍ଡିତା ସେଇ ନାରୀ ପାଲିଙ୍କିରୁ ବାହାରି ଆସି ଭୀତତ୍ରସ୍ତା ହୋଇ ତାଙ୍କ ଆଗରେ ଠିଆ ହେଲେ । ଶିବାଜୀ ଅପଲକ ନେତ୍ରରେ ତାଙ୍କୁ କିଛି ସମୟ ଦେଖିଲେ । ତା'ପରେ କହିଲେ, "ଭଉଣୀ! ତୁମେ ବୟସରେ ମୋଠାରୁ ସାନ । ତୁମ ମଧ୍ୟରେ ମୁଁ ମୋ ମା'ଙ୍କୁ ଦେଖିପାରୁଛି । ଫରକ ଏତିକି ଯେ ତୁମେ ଅପୂର୍ବ ସୁନ୍ଦରୀ । ଭଗବାନ ତୁମକୁ ଅତୁଳନୀୟ ରୂପ ସଂପତ୍ତି ଦେଇଛନ୍ତି । ଲାଗୁଛି ଯେପରି ତୁମକୁ ଅତି ଶ୍ରଦ୍ଧାରେ ଗଢ଼ିଛନ୍ତି । ଯଦି ଏଇ ରୂପରୁ ଟିକିଏ ମୋ ମା'ଙ୍କୁ ଦେଇଥାନ୍ତେ, ତେବେ ତାଙ୍କୁ ଜୀବନରେ ଏତେ କଷ୍ଟ ସହିବାକୁ ପଡ଼ି ନଥାନ୍ତା ଏବଂ ମୁଁ ମଧ୍ୟ ଟିକିଏ ସୁନ୍ଦର ହୋଇଥାନ୍ତି । ମୋ ସେନାପତି

ତୁମକୁ ଅପମାନ କରିଛନ୍ତି, ବିନା କାରଣରେ ତୁମକୁ କଷ୍ଟ ଦେଇଛନ୍ତି। ଯେଉଁ ଉଦ୍ଦେଶ୍ୟରେ ତୁମକୁ ସେ ଏଠାକୁ ଆଣିଛନ୍ତି, ସେ କଥା ଚିନ୍ତା କଲେ ଲଜ୍ଜ୍ୟାରେ ମୋ ମୁଣ୍ଡ ତଳକୁ ନଇଁ ଯାଉଛି। ଯଦି ମା' ଓ ଗୁରୁଜୀ ଏକଥା ଜାଣନ୍ତି, ତେବେ ସେମାନେ ଭାବିବେ ଯେ ଶିବାଜୀର ଏହା ନିର୍ଦ୍ଦେଶ ଥିଲା। ଚିନ୍ତା କର ନାହିଁ। ତୁମକୁ ତୁମ ସ୍ୱାମୀଙ୍କ ନିକଟକୁ ସସମ୍ମାନେ ଫେରାଇ ଦିଆଯିବ। ମୋର ଭଉଣୀ ନାହାନ୍ତି–ଆଜିଠାରୁ ତୁମେ ମୋର ସାନଭଉଣୀ ହେଲ ଓ ମୁଁ ତୁମର ଭାଇ।''



ପାଖରେ ଠିଆ ହୋଇଥିବା ସୈନିକମାନେ ଦେଖିଲେ ଯେ ଶିବାଜୀଙ୍କ ଚକ୍ଷୁ ଅଶ୍ରୁପ୍ଳୁତ ହୋଇଯାଇଛି। କିଛି ସମୟ ପରେ ସେ ନିଜକୁ ସଂଯତ କଲେ ଏବଂ କ୍ରୋଧ ଜର୍ଜରିତ ସ୍ୱରରେ ଅମ୍ବାଜୀଙ୍କୁ କହିଲେ, ''ତୁମର ଏଇ ମୂର୍ଖତା ଏତେ ବଡ଼ ବିଜୟକୁ ପରାଜୟରେ ବଦଳେଇ ଦେଇଛି। ଲୋକେ ଯେବେ ଶୁଣିବେ ଯେ ଶିବାଜୀ ତା'ର ଅନ୍ତଃପୁର ପାଇଁ ଅନ୍ୟ ଲୋକଙ୍କର ଝିଅବୋହୂଙ୍କୁ ଅପହରଣ କରୁଛି, ତେବେ କଣ ହେବ? ମୋ ସମ୍ମାନ ରହିବ ତ ? ମରାଠା ସୈନିକ ଓ ସରଦାରମାନେ ସ୍ତ୍ରୀମାନଙ୍କୁ ଅମର୍ଯ୍ୟାଦା କରିବାକୁ ଲାଗିବେ। ତୁମେ ବିଗତ ୧୪ ବର୍ଷ ଧରି ମୋର ସହଯୋଗୀ ଅଛ, କେବେ ମୋର ଏପରି ଇଚ୍ଛା ବା ଲାଳସାର ଆଭାସ ପାଇଥିଲ କି? ତୁମର କିପରି ସାହସ ହେଲା

ମୋର ଆଦେଶ ବିନା ଏଇ ନିରୀହ ଦୁଃଖୀ ନାରୀକୁ ଏଠାକୁ ନେଇ ଆସିଲ? ଏହିପରି କାର୍ଯ୍ୟ କଣ ହିନ୍ଦୁସାମ୍ରାଜ୍ୟ ଆରମ୍ଭ କରିପାରିବ? ତୁମକୁ ଏ କାର୍ଯ୍ୟ ପାଇଁ ମୃତ୍ୟୁଦଣ୍ଡ ମିଳିବା ଉଚିତ। ମୁଁ ବର୍ତ୍ତମାନ ବହୁତ କ୍ରୋଧରେ ଥିବାରୁ ପ୍ରଧାନମନ୍ତ୍ରୀ ମୋରୋପନ୍ତଙ୍କୁ ତୁମକୁ ଦଣ୍ଡାଦେଶ ଶୁଣାଇବାକୁ କହୁଛି।''

ଅମ୍ବାଜୀ ବିଜୟର ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ ଆସିଥିଲେ, କିନ୍ତୁ ସମସ୍ତଙ୍କ ସମ୍ମୁଖରେ ତାଙ୍କୁ ଏପରି ଅପମାନ ସହିବାକୁ ପଡ଼ିଲା। ଲଜ୍ଜାରେ ତାଙ୍କ ମୁଣ୍ଡ ତଳକୁ ନଇଁ ଗଲା।

ପ୍ରଧାନମନ୍ତ୍ରୀ ମୋରୋପନ୍ତଙ୍କର ଅମ୍ବାଜୀ ପ୍ରତି ଶ୍ରଦ୍ଧା ଥିଲା। ସେ ନିଜେ ତାଙ୍କୁ ଶିକ୍ଷା ଦେଇ ଯୋଗ୍ୟ କରି ଏପରି ଉଚ୍ଚସ୍ଥାନକୁ ଆଣିଥିଲେ। ସେ ଶିବାଜୀଙ୍କୁ ହାତଯୋଡ଼ି ପ୍ରାର୍ଥନା କଲେ କି ଅମ୍ବାଜୀ ବର୍ତ୍ତମାନ ଯୁବକ ଓ ଯୁବକ ସୁଲଭ ଗୁଣରେ ଏ ଅପରାଧ କରିଛନ୍ତି। ସେ କିନ୍ତୁ ପ୍ରକୃତ ବୀର ଓ ସ୍ୱାଭିମାନୀ। ଏହା ତାଙ୍କର ପ୍ରଥମ ଅପରାଧ। ତାଙ୍କୁ କ୍ଷମା କରିଦିଆଯାଉ।

ସଲମା ଭାବିବାକୁ ଲାଗିଲେ, ଶିବାଜୀ ମନୁଷ୍ୟ ନା ଦେବତା। ତାଙ୍କ ଶ୍ୱଶୁର ଯୁଦ୍ଧ ଜିତି ଫେରିବା ସମୟରେ ଶହ ଶହ ସ୍ତ୍ରୀଲୋକଙ୍କୁ ନେଇ ଆସୁଥିଲେ। ନିଜ ପାଇଁ କେତେକଙ୍କୁ ବାଛି କରି ରଖୁଥିଲେ ଓ ଅନ୍ୟମାନଙ୍କୁ ସୈନିକମାନଙ୍କୁ ବାଣ୍ଟି ଦେଉଥିଲେ। ସଲମାଙ୍କ ଆଖିରୁ ଅବିରଳ ଅଶ୍ରୁଧାର ବହିବାକୁ ଲାଗିଲା।

ଏହାର କିଛିଦିନ ପରେ ସଲମା ତାଙ୍କ ଭାଇଘରୁ ନିଜ ଶାଶୁଘରକୁ ବିଦା ହେଲେ। ଶିବାଜୀ ତାଙ୍କର ସେଇ ଭଉଣୀକୁ ସ୍ନେହଭରା ବିଦାୟ ଦେଲେ। ଖଚର ଓ ଘୋଡ଼ା ଉପରେ ଲଦି ଅନେକ ସାମଗ୍ରୀ ଦିଆଗଲା। ସୁନେଲୀ ରୁପେଲୀ ପର୍ଦାରେ ଆଚ୍ଛାଦିତ ହୋଇ ପାଲିଙ୍କିରେ ସଲମା ଯାଉଥିଲେ। ତାଙ୍କର ସୁରକ୍ଷା ପାଇଁ ଘୋଡ଼ାରେ ଚଢ଼ି ଅମ୍ବାଜୀ ସୋନଦେବ ତାଙ୍କ ପାଖରେ ଥିଲେ। ସେ ବର୍ତ୍ତମାନ ମହାରାଜଙ୍କ ସ୍ନେହମୟୀ ଭଉଣୀଙ୍କୁ ଫେରାଇବାକୁ ଯାଉଥିଲେ।

ପୂର୍ବେ ଯେତେବେଳେ ସଲମା ଶିବାଜୀଙ୍କ ରାୟଗଡ଼ ଦୁର୍ଗକୁ ପ୍ରବେଶ କରୁଥିଲେ, ସେତେବେଳେ କାନ୍ଦୁଥିଲେ; ଚିନ୍ତା, ଭୟ ଓ ସନ୍ଦେହ ତାଙ୍କୁ ଘେରିଥିଲା। ବର୍ତ୍ତମାନ ପାଲିଙ୍କିରେ ଫେରିବା ବେଳେ ତାଙ୍କର କୋହ ଉଠୁଥିଲା—ତାହା ଥିଲା ଆନନ୍ଦର, ସ୍ନେହର ଓ ଉଲ୍ଲାସର।



# ମାତୃତ୍ୱ

ମହାରାଷ୍ଟ୍ର କେଶରୀ ଶିବାଜୀ ୨୦ ବର୍ଷ ବୟସରେ ଉପନୀତ ହେବା ବେଳକୁ ତୋରାନା, କୋଣ୍ଡାନା ଓ ପୁରନ୍ଦର ଗଡ଼ଗୁଡ଼ିକୁ ଜୟ କରିସାରିଥିଲେ । ତାଙ୍କର ଯଶ କୋଙ୍କଣରୁ କଲ୍ୟାଣ ପର୍ଯ୍ୟନ୍ତ ବ୍ୟାପି ଯାଇଥିଲା । ତାଙ୍କ ସେନାମଣ୍ଡଳୀରେ ମାଓଲାଙ୍କ ସମେତ ଉଚ୍ଚଜାତିର ମରାଠା, ପଠାନ ଓ ସୈୟଦ ମଧ୍ୟ ଯୋଗଦେବାକୁ ଗୌରବ ମନେ କରୁଥିଲେ । ମୋଗଲ ବାଦଶାହ ଓ ବୀଜାପୁରର ସୁଲତାନ ଶିବାଜୀଙ୍କର କ୍ରମବର୍ଦ୍ଧମାନ ଶକ୍ତିକୁ ଭୟ କରୁଥିଲେ ଏବଂ କିପରି ତାଙ୍କୁ ପରାସ୍ତ କରିହେବ ସେ ସମ୍ବନ୍ଧରେ ସୁଯୋଗର ଅପେକ୍ଷାରେ ଥିଲେ ।

ମହାରାଜା ଶିବାଜୀ ସୁରକ୍ଷା ଦୃଷ୍ଟିରୁ ପ୍ରତାପଗଡ଼ ନାମରେ ଏକ ଦୁର୍ଭେଦ୍ୟ ଦୁର୍ଗ ଗଢ଼ାଇଥିଲେ । ଏହା ମହାବଳେଶ୍ୱର ପାଖରେ ଜାବଲୀ ନାମକ ଘନ ଜଙ୍ଗଲ ମଧ୍ୟରେ ଥିଲା । ଏହା ସହ୍ୟାଦ୍ରି ପର୍ବତମାଳାର ଅଂଶ । ଦୁର୍ଗର ପ୍ରାଚୀର ସବୁ ଉଚ୍ଚନୀଚ ପର୍ବତମାଳାରେ ଗଠିତ ଏବଂ ଏହାକୁ ଚଢ଼ିବା ଦୁଃସାଧ୍ୟ ଥିଲା । ଏହା ଉପରକୁ ଯିବା ଆସିବା ମନୁଷ୍ୟ ପକ୍ଷରେ ତ ଅସମ୍ଭବ ଥିଲା, ଏପରିକି ସାପ ଓ ଗୁଣ୍ଡୁଚି ମୂଷା ମଧ୍ୟ ପାରୁ ନଥିଲେ । ଦେବଗିରି, ଗୋଲକୁଣ୍ଡା ଏବଂ ରଣଥମ୍ଭୋର ଦୁର୍ଗମାନଙ୍କ ସହିତ ଏହାର ତୁଳନା କରାଯାଉଥିଲା ।

ସେ ଏଠାରେ ତୁଲଜାପୁରର ଦେବୀ ଭବାନୀଙ୍କ ମୂର୍ତ୍ତି ସ୍ଥାପନା କରିଥିଲେ । ସମୟ ସମୟରେ ରାୟଗଡ଼ରୁ ଆସି ସେ ଏଠାରେ ରହୁଥିଲେ । ଦୁର୍ଗ ଭିତରେ ସୈନିକ ଓ ଅନ୍ୟ କର୍ମକର୍ତ୍ତାଙ୍କର ଗୋଟିଏ ଛୋଟ ଗାଁ ବସିଯାଇଥିଲା ।

ଦିନେ ସଂଧ୍ୟାରେ ଜଣେ ଯୁବତୀ ଦୁର୍ଗର ଦ୍ୱାର ପାଖରେ ଦୌଡ଼ି ଦୌଡ଼ି ପହଞ୍ଚିଲା । ସେ କ୍ଷୀର ବିକ୍ରି କରିବାକୁ ଆସିଥିଲା । ତା' କାମ ସାରି ସେ ଘରକୁ ଫେରିବାକୁ ବ୍ୟଗ୍ର ଥିଲା ।

ସେ ଜାବଲୀ ଗାଁରୁ ଦିନକୁ ଦୁଇଥର କ୍ଷୀର ନେଇ ଆସୁଥିଲା ଦୁର୍ଗ ଭିତରେ ବିକ୍ରି କରିବାକୁ । ଏହା ବ୍ୟତୀତ ସେ ତା'ଘରର ଯାବତୀୟ କାମ, ବିଲବାଡ଼ି କାମ, ଗାଈବଳଦଙ୍କ ଦେଖାଶୁଣା ମଧ୍ୟ କରୁଥିଲା । କର୍ମଠ ଥିବାରୁ ତା' ଶରୀରରେ ସ୍ୱାସ୍ଥ୍ୟ ସହିତ ଦୀପ୍ତି ମଧ୍ୟ ଥିଲା ।

ସେହି ସମୟରେ ମୋଗଲ ରାଜତ୍ୱ ପ୍ରଚଳିତ ଅଂଚଳରେ ସ୍ତ୍ରୀମାନଙ୍କର ସ୍ୱାଧୀନତା ନଥିଲା । କିନ୍ତୁ ଶିବାଜୀଙ୍କ ରାଜ୍ୟରେ ସ୍ତ୍ରୀମାନଙ୍କୁ ଖରାପ ଦୃଷ୍ଟିରେ ଦେଖିବାର କାହାରି ସାହସ ନଥିଲା ।

ଦୁର୍ଗର ଦ୍ୱାରରେ ରାତିଦିନ ଆଠଜଣ ପ୍ରହରୀ ଜଗୁଥିଲେ । ସେମାନଙ୍କ ହାବିଲଦାର ଥିଲେ ମହାରାଜାଙ୍କର ଜଣେ ବିଶ୍ୱସ୍ତ ଓ ବୟସ୍କ ମରାଠା ସରଦାର । ଦ୍ୱାରର ଉପରି ଭାଗରେ ସେମାନଙ୍କର ରହିବାର ବନ୍ଦୋବସ୍ତ ଥିଲା ।

ଯୁବତୀଟି ସରଦାରଙ୍କୁ ପଚ୍ଚରିଲା–"ବାବା! ଆଜି ଏ ଦୁର୍ଗର ଦ୍ୱାର କାହିଁକି ଏତେ ଶୀଘ୍ର ବନ୍ଦ କରିଦେଲେ? ସୂର୍ଯ୍ୟ ପରା ଏପର୍ଯ୍ୟନ୍ତ ଅସ୍ତ ହୋଇ ନାହାନ୍ତି! ଦ୍ୱାର ଖୋଲନ୍ତୁ–ମୋତେ ମୋ ଘରକୁ ଶୀଘ୍ର ଯିବାକୁ ହେବ । ମୋ ପିଲାକୁ ପଡ଼ୋଶୀ ଘରେ ଦୁଇ ଘଡ଼ି ହେଲା ଛାଡ଼ିଦେଇ ଆସିଛି । ତାକୁ ଭୋକ ହେବଣି ।" ହାବିଲଦାର କହିଲେ, "ଆଜିଠାରୁ ମାର୍ଗଶିର ମାସ ଚ୍ଚଲିଲା । ତେଣୁ ଆଜିଠାରୁ ଘଡ଼ିଏ ପୂର୍ବରୁ ଦ୍ୱାର ବନ୍ଦ ହେବ ।"

–"ବାବା! କାଲିଠାରୁ ଶୀଘ୍ର ଆସିବି । ଆଜି ଯିବାକୁ ଦିଅନ୍ତୁ, ଘରେ ମୋ ପିଲା କାନ୍ଦୁଥିବ ।"

–"ବାୟାଣୀଟା, ଦୁର୍ଗର ଦ୍ୱାର ଖୋଲିବା-ବନ୍ଦ କରିବା କଣ ମୋ ହାତର କଥା! ତୁ କାଲି ଯାଇ ପାରିବୁ" ହାବିଲଦାର କହିଲେ ।

ଯୁବତୀଟି ବହୁତ କାକୁତିମିନତି କଲା । ଦ୍ୱାର ଖୋଲା ଗଲା ନାହିଁ । କିଛି ସମୟ ସେଇଠି ବସି କାନ୍ଦିଲା । ଅନ୍ଧାର ହେବାରୁ ଦୁର୍ଗ ଭିତରକୁ ଫେରିଗଲା ।

ତା'ପର ଦିନ ଦେଖାଗଲା ଯେ କ୍ଷୀର କଳସ ଧରି ଯୁବତୀଟି ସକାଳୁ ଦ୍ୱାର ପାଖରେ ଠିଆ ହୋଇଛି । ପ୍ରହରୀ ହାବିଲଦାରକୁ ଡାକି ଦେଖାଇଲେ । ସମସ୍ତେ ଆଶ୍ଚର୍ଯ୍ୟ ହେଲେ କି ରାତିରେ ତ ଦୁର୍ଗ ଭିତରେ ଥିଲା, ପୁଣି ସକାଳୁ କେମିତି ବାହାରେ ଅଛି? ସରଦାର ତାକୁ ଏ ବିଷୟରେ ପଚ୍ଚରିଲେ । ସେ ଖୁବ୍ ଜୋର୍‌ରେ ହସି ହସି କହିଲା, "ବାବା! ଆପଣ ମତେ ଛାଡ଼ିଲେନି, ସେଥିପାଇଁ ମୁଁ ଯାଦୁବିଦ୍ୟା ଓ ମନ୍ତ୍ର ବଳରେ ବାହାରକୁ ଚ୍ଚଲିଗଲି ।"

ସରଦାର ଡରି ଡରି ଯୁବତୀକୁ ନେଇ ଦୁର୍ଗାଧ୍ୟକ୍ଷଙ୍କ ପାଖକୁ ଗଲେ । ସେଇ ଯୁଗରେ ଦୁର୍ଗାଧ୍ୟକ୍ଷଙ୍କର ଖୁବ୍ ସମ୍ମାନ ଥିଲା । ସମସ୍ତେ ତାଙ୍କୁ ଭୟ

ଏବଂ ଭକ୍ତି କରୁଥିଲେ। ଯୁବତୀଟି କିନ୍ତୁ ନିର୍ଭୟରେ କହିଲା, ''ବାବା! ମୁଁ ଏମାନଙ୍କୁ ଦ୍ୱାର ଖୋଲିବା ପାଇଁ ବହୁତ ଅନୁରୋଧ କଲି, ହେଲେ ଏମାନେ ଖୋଲିଲେ ନାହିଁ। ମୁଁ ମୋ ଘରକୁ ଯିବା ବହୁତ ଜରୁରୀ ଥିଲା, ତେଣୁ ମୁଁ ଦୁର୍ଗର ପାଚେରୀ ଡେଇଁ ଚାଲିଗଲି।''

ଦୁର୍ଗାଧ୍ୟକ୍ଷ ଏ କଥାରେ ବିସ୍ମିତ ହେଲେ ଓ ମହରାଜଙ୍କୁ ଏ ବିଷୟରେ ଜଣାଇଲେ। ଯୁବତୀକୁ ରାଜମହଲକୁ ଡକାଗଲା। ପ୍ରାତଃକାଳରେ ମହାରାଜ ଶିବାଜୀ ଭବାନୀଙ୍କ ପୂଜା ସାରି ବାହାରକୁ ଆସି ଦେଖିଲେ, ସିଧାସାଦା ବେଶରେ ଏକ ସୁନ୍ଦରୀ ଯୁବତୀ ଭୟଭୀତ ହୋଇ ଠିଆ ହୋଇଛି।

–''ଝିଅ, ସତ କୁହ। ତୁମେ କେଉଁ ଦ୍ୱାରବାଟେ ବାହାରକୁ ଗଲ? ମୁଁ ତୁମକୁ ଦଣ୍ଡ ଦେବି ନାହିଁ। ତୁମେ ସତ କୁହ'' ମହାରାଜ ତାକୁ ଆଶ୍ୱସ୍ତି ଭରା ସ୍ୱରରେ ପଚାରିଲେ।

ଅତି ନମ୍ରତା ସହକାରେ ସେ କହିଲା–''ମହାରାଜ! ବହୁତ ଖୁସାମତ କରିଲା ପରେ ମଧ୍ୟ ପ୍ରହରୀମାନେ ଦ୍ୱାର ଖୋଲିଲେ ନାହିଁ, ଭୋକ ବିକଳରେ ମୋ ଛୁଆ କାନ୍ଦୁଥିବା ଶୁଣି ଆଉ ସହି ପାରିଲି ନାହିଁ। ଦକ୍ଷିଣ ପଟ ପ୍ରାଚୀରରେ ଲୁଗା ଝୁଲାଇ ତଳକୁ ଓହ୍ଲାଇ ପଡ଼ିଲି। ମୋ ଓଢ଼ଣୀ ଏପର୍ଯ୍ୟନ୍ତ ସେଠାରେ ଟଙ୍ଗା ହୋଇଛି।''



ତା'ର ଏହି ଅସଂଭବ କଥାକୁ କେହି ବିଶ୍ୱାସ କଲେ ନାହିଁ। ଯେଉଁ ଦୁର୍ଗର ଉଚ୍ଚତା ୧୨୫ ଫୁଟ, ସେଥିରୁ କଣ ଓହ୍ଲାଇ ହେବ!

ଶିବାଜୀ କହିଲେ, "ମୋ ସାଂଗରେ ଆସି ସେ ସ୍ଥାନ ଦେଖାଅ।" ନିର୍ଭୟ ହୋଇ ସେ ଆଗେଇଲା। ମହାରାଜା, ମହାମନ୍ତ୍ରୀ ଓ ଦୁର୍ଗାଧ୍ୟକ୍ଷ ତାଙ୍କ ସଙ୍ଗରେ ଗଲେ।

ସୁରକ୍ଷା ଦୃଷ୍ଟିକୋଣରୁ ଏହି ବିଷୟକୁ ଗୋପନୀୟ ରଖିବାକୁ ଚେଷ୍ଟା କରାଗଲା, କିନ୍ତୁ ଏମିତି କଥା କି ଲୁଚି ରହେ। ଏମିତି କଥା ବଢ଼ି ବଢ଼ି ଗଲେ। ଜଣେ କହିଲା, ମା' ଭବାନୀଙ୍କ କୃପା ଏହା ଉପରେ ଅଛି। ଆଉ ଜଣେ କହିଲା, ମୁଁ ସ୍ୱୟଂ ଚକ୍ଷୁରେ ଦେଖିଛି ଯେ ଏକ ବିରାଟକାୟ ମାଙ୍କଡ଼ ଏହାଙ୍କୁ କାନ୍ଧରେ ବସାଇ କାଛରେ ଓହ୍ଲାଇ ଯାଉଥିଲା। ବୋଧହୁଏ ହନୁମାନ ହୋଇଥିବେ।

ଘଟଣାସ୍ଥଳକୁ ଆସିବାରେ ଦେଖାଗଲା ଯେ ପ୍ରକୃତରେ ଦକ୍ଷିଣ ପ୍ରାଚୀରର ଗୋଟିଏ ପଥରରେ ତା'ର ଓଢ଼ଣୀ ବନ୍ଧା ହୋଇଛି। ସେ କହିଲା ଯେ ସେ ଏହି ଓଢ଼ଣୀକୁ ଧରି ତଳକୁ ଓହ୍ଲାଇ ଯାଇଥିଲା ଓ ଦୌଡ଼ି ଦୌଡ଼ି ଘରକୁ ଗଲା। ତଳେ ଦେଖାଗଲା ଯେ ସୌଭାଗ୍ୟବଶତଃ ଗୁଡ଼ିଏ ପତ୍ର ଗଦା ହୋଇଥିଲା ଏବଂ ଏହା ଉପରେ କେହି ପଡ଼ିଯାଇଥିବାର ପ୍ରମାଣ ମଧ୍ୟ ଦେଖାଯାଉଥିଲା।

ଏହି ଦୁର୍ଗ ତିଆରି ହେବା ପରେ ସେନାପତି ଓ ଦୁର୍ଗାଧ୍ୟକ୍ଷ ମହାରାଜାଙ୍କୁ ବିଶ୍ୱାସ ଦେଇଥିଲେ ଯେ, ଏହି ଦୁର୍ଗକୁ ଚଢ଼ିବା ଓ ଓହ୍ଲାଇବା ମନୁଷ୍ୟ କଣ, ସରୀସୃପ ଓ ଗୁଣ୍ଡୁଚି ପକ୍ଷରେ ମଧ୍ୟ ସମ୍ଭବ ନୁହେଁ। ସ୍ୱୟଂ ଶିବାଜୀ ମଧ୍ୟ ନିରୀକ୍ଷଣ କରିଥିଲେ।

ସବୁ ବିଷୟ ଦେଖିଲା ପରେ ଶିବାଜୀ ଭାବିଲେ, ଯେପରି ଭଗବତ କୃପାରୁ ପଙ୍ଗୁ ପାହାଡ଼ ଚଢ଼ିପାରେ, ସେହିପରି ଏହି ଯୁବତୀ ଭଗବତ କୃପାରୁ ଏହି ସୁଉଚ୍ଚ ପ୍ରାଚୀରରୁ ଡେଇଁପଡ଼ି ବଞ୍ଚି ଯାଇଛି।

ପରିଶେଷରେ ମହାରାଜା କହିଲେ, "ତୁମେ ରାଜ୍ୟର ନିୟମ ଭଂଗ କରି ନିଜ ଜୀବନକୁ ବିପନ୍ନ କରିଛ। ଏଥିପାଇଁ ତୁମକୁ କଡ଼ା ଦଣ୍ଡ ମିଳିବା କଥା। କିନ୍ତୁ ତୁମର ବୟସ ଓ ସାହସ ଦେଖି ମୁଁ ତୁମକୁ କ୍ଷମା କରିଦେଲି।

ଗୋଟିଏ କଥା ମୁଁ ବୁଝି ପାରୁ ନାହିଁ ଯେ ତୁମ ଘର ତ ଏଠାରୁ ଦୁଇ ମାଇଲ ଦୂର, ପୁଣି ଏତେ ଦୂରରୁ ତୁମ ପିଲାର କାନ୍ଦ ତୁମକୁ କିପରି ଶୁଭିଲା?''

ମହାରାଜାଙ୍କ ଗୋଡ଼ ଧରି ଯୁବତୀଟି କହିଲା, ''ମୋ ମାତାପିତା ବାଲ୍ୟକାଳରୁ ମରିଯାଇଛନ୍ତି। ଆପଣ ମୋର ମାତାପିତା ଅଟନ୍ତି। ଆପଣଙ୍କ ଏଇ ଦୁର୍ଗ ଭିତରେ କ୍ଷୀର ବିକି ମୋର ଛୋଟ ପରିବାର ଚଳାଉଛି। ଆମର ଖଣ୍ଡିଏ ଛୋଟ ଜମି ଅଛି। କିନ୍ତୁ ଏହା ପଥୁରିଆ ହୋଇଥିବାରୁ ଏହାର ଆୟରୁ ଖାଇବା ଖର୍ଚ୍ଚ ଉଠାଇ ହୁଏ ନାହିଁ। ଭଗବାନଙ୍କ ରାଣ ଖାଇ, ଆପଣଙ୍କ ପାଦ ଛୁଇଁ କହୁଛି ଯେ, ପ୍ରକୃତରେ ମୋ ଛୁଆର କାନ୍ଦ ମୋତେ ଶୁଭିଲା ଏବଂ ମୁଁ ବ୍ୟସ୍ତ ହୋଇଗଲି। ମୋର ଯାହା ଦୋଷ ହୋଇଛି ଆପଣଙ୍କୁ କହିଲି, ଯାହା ଦଣ୍ଡ ଦେବେ ଗ୍ରହଣ କରିବି।''

ମହାରାଜା ତାକୁ ରୁପାର ଦା, ନୂଆ ଲୁଗା ଓ ତା' ପିଲା ପାଇଁ ବିଭିନ୍ନ ପ୍ରକାର ଖେଳନା ଓ ମିଠାଇ ଦେଇ ବିଦା କଲେ।



# ବୁନ୍ଦେଲବାସୀଙ୍କ ଇଜ୍ଜତ

୧୯୬୧ ମସିହାର କଥା । ଚିରଗ୍ରାମରୁ ରାଷ୍ଟ୍ରକବି ମୈଥିଲୀଶରଣଜୀ ଏବଂ ସିୟାରାମଶରଣଜୀଙ୍କ ସଙ୍ଗରେ ଇତିହାସ-ପ୍ରସିଦ୍ଧ ବୁନ୍ଦେଲବାସୀଙ୍କ ରାଜଧାନୀ ଓରଛା ଦେଖିବାକୁ ଯାଇଥିଲି । ସେଠାରେ ଥିବା ଦୁର୍ଗ ଏବଂ ଘରମାନଙ୍କରେ ଅନେକ ବର୍ଷ ପୂର୍ବରୁ ଥିବା ତୋପ ଏବଂ ଗୁଳିଗୋଳାର ଚିହ୍ନ ସେପର୍ଯ୍ୟନ୍ତ ଦେଖିବାକୁ ମିଳୁଥିଲା ।

ବେତବା ନଦୀ କୂଳରେ ଓରଛା ଏବେ ଏକ ସାଧାରଣ ଗାଁଟିଏ ହୋଇ ରହିଛି । ମାତ୍ର ତିନିଶହ ବର୍ଷପୂର୍ବେ ଏହା ଏକ ସମୃଦ୍ଧ ନଗର ଥିଲା । ୧୬୭୩ ମସିହାରେ ମହାରାଜ ଚମ୍ପତରାୟ ଏଠାରୁ ଚାଲିଯାଇଥିଲେ । ଏ ନଗର ତ୍ୟାଗ କରିବା ପରେ ଏ ସ୍ଥାନ ମୋଗଲମାନଙ୍କ ଅଧୀନରେ ରହିଲା । ଯଦିଓ ତାଙ୍କର ପୁତ୍ର ଛତ୍ରସାଲ ଇତିହାସ-ପ୍ରସିଦ୍ଧ ବୀର ଥିଲେ, ମାତ୍ର ସେ ଓରଛାକୁ ପୁନର୍ବାର ତାଙ୍କ ଅଧୀନକୁ ଆଣିପାରି ନଥିଲେ ।

ଗୁପ୍ତ ମହାଶୟ ମହଲର ଏକ କୋଠରୀରେ ବସି ଆମକୁ ଦୁଇଟି କଥା ଶୁଣାଇଥିଲେ, ଯାହା ଶୁଣି ଲୋମ ଟାଙ୍କୁରି ଉଠିଥିଲା ଏବଂ ଚକ୍ଷୁ ଲୋତକପୂର୍ଣ୍ଣ ହୋଇଯାଇଥିଲା ।

ପ୍ରଥମ କଥାଟି ଥିଲା କୁମାର ହରଦୌଲଙ୍କ ସମ୍ବନ୍ଧରେ ଏବଂ ଦ୍ୱିତୀୟଟି ମହାରାଜ ଚମ୍ପତରାୟଙ୍କର ରାଣୀ ସାରନ୍ଧାଙ୍କ ସମ୍ବନ୍ଧରେ ।

ସେ କହିଲେ ଯେ ଦ୍ୱିଜେନ୍ଦ୍ରଲାଲ ରାୟ ଏବଂ କର୍ଣ୍ଣେଲ ଟାଡ୍ ଅବଶ୍ୟ ସିସୋଦିୟା ଏବଂ ରାଠୋରଙ୍କୁ ଇତିହାସ ପୃଷ୍ଠାରେ ଅମର କରିଦେଇଛନ୍ତି, ଏମିତି ଦେଖିବାକୁ ଗଲେ ବୁନ୍ଦେଲବାସୀଙ୍କ ବୀରତା ମଧ୍ୟ କିଛି କମ୍ ନଥିଲା ।

ଏହି ଗଳ୍ପର ନାୟିକା ସାରନ୍ଧା ବୁନ୍ଦେଲଖଣ୍ଡର ଏକ ସାଧାରଣ ଜମିଦାରଙ୍କର କନ୍ୟା ଥିଲେ । ନିଜର ସୌନ୍ଦର୍ଯ୍ୟ ଏବଂ ସାହସ ପାଇଁ ତାଙ୍କର ଖୁବ୍ ନାମ ଥିଲା । ସେ ସମୟରେ ବୁନ୍ଦେଲଖଣ୍ଡରେ ମୋଗଲ ଏବଂ ପଠାଣମାନଙ୍କର ବାରମ୍ବାର ଆକ୍ରମଣ ହେଉଥିଲା । ଏଥିପାଇଁ ସେଠାରେ ସ୍ତ୍ରୀଲୋକମାନେ ଅସ୍ତ୍ର-ଶସ୍ତ୍ର ଚାଳନାରେ ନିପୁଣ ଥିଲେ ।

ଓରଛା ନରେଶ ମହାରାଜ ଚମ୍ପତରାୟ ସାରନ୍ଧାର ସୌନ୍ଦର୍ଯ୍ୟ ଏବଂ ଶୌର୍ଯ୍ୟ ବିଷୟରେ ଅବଗତ ଥିଲେ । ସେ ସାରନ୍ଧାର ବଡ଼ଭାଇ ଠାକୁର

ଅନିରୁଦ୍ଧସିଂଙ୍କ ନିକଟକୁ ସାରନ୍ଧାଙ୍କୁ ବିବାହ କରିବା ନିମିତ୍ତ ପ୍ରସ୍ତାବ ପଠାଇଲେ।

ଅନିରୁଦ୍ଧ ସିଂହ ଏ ପ୍ରସ୍ତାବରେ ବହୁତ ଆନନ୍ଦିତ ହେଲେ; କାରଣ ଚମ୍ପତରାୟ ଏତେ ବଡ଼ ରାଜ୍ୟର ଅଧିପତି ଏବଂ ସେ ନିଜେ ଗୋଟିଏ ସାମାନ୍ୟ ଜାଗିରଦାର। ମାତ୍ର ତାଙ୍କର ଗୋଟିଏ ସର୍ତ୍ତ ଥିଲା। ତାହା ହେଲା, ମହାରାଜାଙ୍କର ଗୃରୋଟି ରାଣୀ ଅଛନ୍ତି। ଏହା ସତ୍ତ୍ୱେ ସେ ଯଦି ସାରନ୍ଧାକୁ ପାଟରାଣୀ କରିବେ ଏବଂ ତାର ପୁତ୍ର ରାଜସିଂହାସନରେ ବସିବ, ତେବେ ତାଙ୍କର ଏ ବିଭାଘରରେ ଆପତ୍ତି ରହିବ ନାହିଁ। ଚମ୍ପତରାୟ ଏ ସର୍ତ୍ତରେ ରାଜି ହେବାରୁ ବିଭାଘର ବଡ଼ ଧୁମ୍‌ଧାମ୍‌ରେ ସମ୍ପନ୍ନ ହେଲା। ସାରନ୍ଧା ପାଟରାଣୀ ହୋଇ ଓରଛାରେ ରହିଲେ। ତାଙ୍କର ଗୃରୋଟି ପୁତ୍ର ହେଲେ। ସେମାନଙ୍କ ମଧ୍ୟରେ ଛତ୍ରସାଲ ପରମ ପ୍ରତାପୀ ଥିଲେ।

ଚମ୍ପତରାୟ ଶାହାଜାନ୍‌ଙ୍କ ଦରବାରରେ ବଡ଼ ମନସୁବେଦାର ଥିଲେ। ଓରଛା ବ୍ୟତୀତ କଳାପୀ କ୍ଷେତ୍ର ମଧ୍ୟ ତାଙ୍କ ଅଧୀନରେ ଥିଲା। ଯେତେବେଳେ ଔରଙ୍ଗଜେବ୍ ରାଜା ହେଲେ ସେ ତାଙ୍କୁ ପଦୋନ୍ନତି ଦେଇ ବାରହଜାରୀ ମନସୁବେଦାର କରିଦେଲେ। ଏହି ସମୟରେ ହିନ୍ଦୁ ରାଜାଙ୍କ ମଧ୍ୟରେ ଜୟପୁରର ମିର୍ଜା ରାଜା ଜୟସିଂଙ୍କ ବ୍ୟତୀତ ଏ ସମ୍ମାନର ଅଧିକାରୀ ଅନ୍ୟ କେହି ନଥିଲେ।

ଚମ୍ପତରାୟ ରାଣୀ ସାରନ୍ଧା ଏବଂ ତାଙ୍କର ପୁତ୍ର ସହିତ ମଝିରେ ମଝିରେ ଦିଲ୍ଲୀରେ ରହୁଥିଲେ। ତାଙ୍କ ପାଖରେ ଗୋଟିଏ ଇରାକୀ ଘୋଡ଼ା ଥିଲା। ଏ ଘୋଡ଼ାଟି ତାର ଗତିରେ ଥିଲା ଅଦ୍ୱିତୀୟ। ପୂର୍ବେ ଉକ୍ତ ଘୋଡ଼ା ଶାହାଜାନଙ୍କର ସେନାପତି ବଳିବାହାଦୂରଙ୍କ ପାଖରେ ଥିଲା। ତାଙ୍କୁ ସେ ଯୁଦ୍ଧରେ ପରାସ୍ତ କରି ଘୋଡ଼ାଟିକୁ ନେଇ ଆସିଥିଲେ। ଔରଙ୍ଗଜେବଙ୍କ ସମୟରେ ବଳିବାହାଦୂର ଆଲାସେନାପତି ପଦରେ ରହିବାରୁ ସେ ଉକ୍ତ ଘୋଡ଼ାଟିକୁ ପୁନର୍ବାର ତାଙ୍କ ଠାରୁ ନେଇଆସିବାକୁ ଓର ଉଣ୍ଡୁଥିଲା। ଦିନେ କୁମାର ଛତ୍ରସାଲ ଘୋଡ଼ାରେ ବସି ଯାଉଥିବା ବେଳେ ବଳିବାହାଦୂରଙ୍କର ସିପାହୀମାନେ ଜବରଦସ୍ତ ଘୋଡ଼ାଟିକୁ ତାଙ୍କଠାରୁ ନେଇଗଲେ। ଏହି ସମୟରେ ଛତ୍ରସାଲଙ୍କର ବୟସ ମାତ୍ର ଚଉଦ। ସେ ବଡ଼ ଦୁଃଖରେ ରାଣୀଙ୍କୁ ଏକଥା କହିଲା। ଏତିକି ବେଳେ ଚମ୍ପତରାୟ କୌଣସି ଏକ ଯୁଦ୍ଧରେ ନିଯୁକ୍ତ ଥିଲେ। ଦିଲ୍ଲୀରେ ରାଣୀ ଏକୁଟିଆ ଥିଲେ। ସେ ତାଙ୍କ ସହିତ ତାଙ୍କର ପଚିଶ

ଜଣ ବିଶ୍ୱସ୍ତ ସିପାହୀଙ୍କୁ ସଙ୍ଗରେ ନେଇ ବାଦଶାହଙ୍କର ଦରବାରରେ ଉପସ୍ଥିତ ହୋଇ କ୍ରୋଧରେ ବଳିବାହାଦୂରକୁ କହିଲେ– "ଖାଁ ସାହେବ! ଗୋଟିଏ ଛୋଟ ପିଲା ଉପରେ ହାତ ଉଠାଇବାରେ ଆପଣଙ୍କୁ ଲଜ୍ଜା ଲାଗିଲା ନାହିଁ? ଆପଣ ଯଦି ପ୍ରକୃତରେ ଠିକ୍ ମର୍ଦ୍ଦ ହୋଇଥାଆନ୍ତେ, ତେବେ ଲଢ଼େଇରେ ପରାସ୍ତ ହୋଇ ଘୋଡ଼ାକୁ ହରାଇ ନଥାନ୍ତେ।"

ବାଦଶାହ ଏବଂ ତାଙ୍କର ପାଖରେ ଥିବା ଲୋକମାନେ ଦେଖିଲେ ଯେ ଜଣେ ତେଜସ୍ୱିନୀ ଏବଂ ରୂପବତୀ ମହିଳା ହାତରେ ତରବାରୀ ଧରି ଖାଁ ସାହେବଙ୍କୁ ତିରସ୍କାର କରୁଅଛି।

ବାଦଶାହ ଔରଙ୍ଗଜେବ ତାଙ୍କର ମୁସଲମାନ ସେନାପତିକୁ ନିଜର ଦରବାରରେ ସମସ୍ତଙ୍କ ସାମନାରେ ଅପମାନିତ ତଥା ଲାଞ୍ଛିତ ହେବା ଦେଖି କ୍ରୋଧରେ ଶିହରୀ ଉଠିଲେ। କିନ୍ତୁ ସେ ଜଣେ ପ୍ରବୀଣ କୁଟନୀତିଜ୍ଞ ଥିଲେ। ତାଙ୍କୁ ଚମ୍ପତ୍‌ରାୟ୍‌ଙ୍କର ବୀରତା ବିଷୟରେ ଜଣାଥିଲା। ସେ କହିଲେ, "ରାଣୀ ସାହିବା! ଆପଣଙ୍କର ବାହାଦୁରୀରେ ମୁଁ ଅତ୍ୟନ୍ତ ପ୍ରସନ୍ନ। ମାତ୍ର ଗୋଟିଏ ସାମାନ୍ୟ ଘୋଡ଼ା ପାଇଁ ଆପଣ ଆଲାସେନାପତିଙ୍କ ସହିତ ଯେଉଁ ବ୍ୟବହାର କଲେ, ଏହାର ପରିଣାମ ଆପଣଙ୍କ ପାଇଁ ଏବଂ ରାଜା ସାହେବଙ୍କ ପାଇଁ ଭଲ ହେବ ନାହିଁ।" ରାଣୀ କହିଲେ–"ବାଦଶାହ ସଲାମତ। ଏଇଟା ସାମାନ୍ୟ ଘୋଡ଼ାର କଥା ନୁହେଁ, ଏହା ଆମ ଇଜ୍ଜତର କଥା। ଆମେ ବୁନ୍ଦେଲବାସୀ ନିଜର ଇଜ୍ଜତ ନିମିତ୍ତ ସବୁକିଛି ତ୍ୟାଗ କରିବାକୁ ପ୍ରସ୍ତୁତ।"

ବାଦଶାହ ଔରଙ୍ଗଜେବ କହିଲେ, "ଆପଣଙ୍କର ରାଜା ଏଠାରେ ଥିଲେ ମୋର ଦରବାରରେ ଏପରି ବ୍ୟବହାର କରିବାକୁ କଦାପି ସାହସ କରି ନଥାନ୍ତେ। ଯାହା ହେଲା ହେଲା, ଆପଣ ଘରକୁ ଫେରିଯାଆନ୍ତୁ। ଆପଣଙ୍କୁ ଘୋଡ଼ା ମିଳିଯିବ, ମାତ୍ର ଏଥିପାଇଁ ଆପଣଙ୍କୁ ବହୁତ କିଛି ହରାଇବାକୁ ପଡ଼ିବ।"

ଯେତେବେଳେ ରାଜା ଚମ୍ପତ୍‌ରାୟ୍ ଦିଲ୍ଲୀ ଲେଉଟି ଆସିଲେ ସେତେବେଳେ ତାଙ୍କର ପତ୍ନୀଙ୍କ ଠାରୁ ସମସ୍ତ ବିଷୟ ଅବଗତ ହୋଇ ବହୁତ ଚିନ୍ତିତ ହୋଇପଡ଼ିଲେ। ହେଲେ ମଧ୍ୟ ପତ୍ନୀଙ୍କର ଆଚରଣରେ ତାଙ୍କର ସମର୍ଥନ ରହିଲା। ଚମ୍ପତ୍‌ରାୟ୍‌ଙ୍କର ମନସବଦାରୀ ଏବଂ ଜାଗିର ଉଚ୍ଛେଦ ହେଲା। ସେ ଓରଛାକୁ ଯାଇ ସେଠାରେ ରହିଲେ।

ବଳିବାହାଦୂର ଅପମାନକୁ ଭୁଲି ପାରି ନଥିଲା । କିଛି ଦିନ ପରେ ସେ ଅନେକ ସୈନ୍ୟ ସାମନ୍ତ ଧରି ଓରଛା ଆକ୍ରମଣ କଲା । ତା ଫୌଜରେ ଅନେକ ଦେଶଦ୍ରୋହୀ ରାଜପୁତ ମଧ୍ୟ ଥିଲେ ।

ଯଦିଓ ଚମ୍ପତ୍‌ରାୟଙ୍କ ପକ୍ଷରେ ବୁନ୍ଦେଲସେନା ବଳିବାହାଦୂର ସହିତ ପ୍ରବଳ ସଂଗ୍ରାମ କଲେ, ତଥାପି ତାଙ୍କର ବାଦଶାହଙ୍କ ଫୌଜ ସହିତ ଲଢ଼ିବାର ଶକ୍ତି ନଥିଲା । ଓରଛାର ସମସ୍ତ ସୈନ୍ୟ ମୃତ୍ୟୁବରଣ କଲେ । କିଲାରେ କେବଳ ସ୍ତ୍ରୀଲୋକ ଏବଂ ପିଲାମାନେ ରହିଥିଲେ । ରାଜା ଯୁଦ୍ଧରେ ଆଘାତପ୍ରାପ୍ତ ହୋଇ ଶଯ୍ୟାଶାୟୀ ହେଲେ । ରାଣୀ ପତିଙ୍କ ସେବାରେ ରହିଲେ । ତାଙ୍କ ମନରେ ସର୍ବଦା ଆଶଙ୍କା ରହିଲା । ତାଙ୍କୁ ଲାଗିଲା, ତାଙ୍କର କିଲାକୁ ରକ୍ଷା କରିବା କଷ୍ଟକର । ସେ ଭାବିଲେ, ଆମେ କୌଣସି ପ୍ରକାରରେ ଏଠାରୁ ପଳାୟନ କଲେ ଅନ୍ତତଃ ଆମର ପ୍ରଜାମାନେ ବଞ୍ଚିଯିବେ ।

ଏ ବିଷୟ ଚିନ୍ତା କରି କେବଳ ୧୦ ଜଣ ସିପାହୀଙ୍କ ସହିତ ରାଜା-ରାଣୀ ଅନ୍ଧକାର ରାତିରେ କିଲାର ଗୁପ୍ତଦ୍ୱାର ଦେଇ ବାହାରକୁ ଚାଲିଗଲେ । ରାଣୀ ଘୋଡ଼ାରେ ବସିଥିଲେ, ପୀଡ଼ିତ ରାଜା ପାଲିଙ୍କିରେ ଥିଲେ ।



ପରଦିନ ମୋଗଲମାନଙ୍କର ସୈନ୍ୟମାନେ ତାଙ୍କୁ ଘେରିଗଲେ । ତାଙ୍କର ଦଶଜଣ ସିପାହୀ ବୀରତ୍ୱପୂର୍ବକ ଯୁଦ୍ଧ କରି ପ୍ରାଣ ହରାଇଲେ । ରାଣୀ ମଧ୍ୟ

ଖୁବ୍ ସାହସର ସହିତ ସେମାନଙ୍କ ସହିତ ଯୁଦ୍ଧ କଲେ । ମାତ୍ର ଏତେ ବଡ଼ ସେନା ସହିତ ସେ କେତେ ସମୟ ଲଢ଼ିବେ? ସେ ଗୁରୁତର ଭାବେ ଆହତ ହୋଇ ରାଜାଙ୍କର ପାଲିଙ୍କି ପାଖକୁ ଆସି କହିଲେ–"ମହାରାଜ! ମୁଁ ଅନ୍ତିମ ବିଦାୟ ନେବାକୁ ଆସିଅଛି । ମୋର ଭୁଲ୍‌କୁ କ୍ଷମା କରିବେ । ଆପଣଙ୍କର ଚରଣର ସେବା ନିମିତ୍ତ ମୁଁ ପରଲୋକରେ ପ୍ରତୀକ୍ଷା କରିବି ।"

ମହାରାଜ କହିଲେ–"ରାଣୀ! ତୁମେ ଦୀର୍ଘ କୋଡ଼ିଏ ବର୍ଷ ଧରି ମୋର ସୁଖଦୁଃଖର ସାଥୀ ଥିଲ । ଆଜି ମୋତେ ଶତ୍ରୁଙ୍କ ହାତରେ ଏପରି ଜୀବିତାବସ୍ଥାରେ ଛାଡ଼ି ଯିବାରେ ତୁମକୁ କଣ ଦୁଃଖ ହେଉ ନାହିଁ? ମୋତେ କଣ ତୁମେ ସାରାଜୀବନ ମୋଗଲଙ୍କ କାରାଗାରରେ ରଖିଦେଇ ଯିବ?"

ରାଣୀ କହିଲେ–"ମହାରାଜ! ଗତ କାଲି ପର୍ଯ୍ୟନ୍ତ ମୁଁ ଓରଛା ରାଜ୍ୟର ରାଣୀ ଥିଲି । ଏବେ ସମ୍ପୂର୍ଣ୍ଣ ଅସହାୟ । ତଥାପି ଆପଣଙ୍କର ଯାହା କିଛି ଆଜ୍ଞା ହେବ, ତାହା ମୋର ଶିରୋଧାର୍ଯ୍ୟ ହେବ ।"

"ସାରନ୍ଧା! ତୁମେ ସର୍ବଦା ମୋର ଆଜ୍ଞା ପାଳନ କରି ଆସିଛ । ଯଦିଓ ମୁଁ ଏବେ ପୀଡ଼ିତ ଏବଂ ଅସହାୟ, ତଥାପି ମୋର ଭରସା ଅଛି ଯେ ମୋର ଅନ୍ତିମ ବାଣୀ ତୁମେ ଗ୍ରହଣ କରିବ । ମୋର ଅନ୍ତରର ଇଚ୍ଛା ଯେ ତୁମେ ତଲବାରରେ ମୋର ଛାତିକୁ ଭୁଷିଦେଇ ପରେ ତୁମେ ନିଜ ଛାତିରେ ଭୁଷିଦେବ । ମୋ ମନ କହୁଛି, ତୁମର ପୁତ୍ର ଜୀବିତ ଅଛି । ସେ ନିଶ୍ଚୟ ଏହାର ପ୍ରତିଶୋଧ ନେବ ।"

ରାଣୀ ଅତ୍ୟନ୍ତ ଭାବବିହ୍ୱଳ ହୋଇ କାନ୍ଦି କାନ୍ଦି କହିଲେ–"ମହାରାଜ! ଆପଣ ଏପରି ଆଜ୍ଞା କେମିତି ଦେଉଛନ୍ତି? ଏପରି କଥା କଣ କେବେ ଘଟିଛି? ମୋତେ ଆପଣ ପତିହନ୍ତା କରିଦେବାକୁ କିପରି ଚାହୁଁଛନ୍ତି?"

–"ହେ ରାଣୀ! ଏ ସମୟରେ ନିଜର ନିଜତ୍ୱ ନାହିଁ । ତୁମେ ମୋତେ କଥା ଦେଇଛ । ତେଣୁ ତୁମେ ପ୍ରତିଜ୍ଞା ପାଳନ କର ।"

ବାଦଶାହୀ ସିପାହୀମାନେ ଯେତେବେଳେ ସେଠାରେ ପହଞ୍ଚିଲେ, ସେତେବେଳେ ରାଜା ଓ ରାଣୀଙ୍କର ମୃତ ଶରୀର ଦେଖିବାକୁ ପାଇଲେ । ସେମାନେ ଦେଖିଲେ, ରାଣୀଙ୍କ ଜୀବନହୀନ ଶରୀର ରାଜାଙ୍କର ଛାତି ଉପରେ ପଡ଼ିଅଛି ।



# ଲଙ୍ଗଳା ଫକୀର ସରମଦ

ବହୁ ବର୍ଷ ତଳର କଥା । ବଡ଼ଭାଇ ଦାରାକୁ ହତ୍ୟା କରି ଏବଂ ନିଜର ପିତା ଶାହାଜାନଙ୍କୁ ବନ୍ଦୀ କରି ଔରଙ୍ଗଜେବ ଦିଲ୍ଲୀ ସିଂହାସନରେ ବସିଲେ । ସେ ରାଜସିଂହାସନ ଆରୋହଣ କଲାପରେ ହିନ୍ଦୁମାନଙ୍କର ଧର୍ମସ୍ଥାନ ତଥା ମନ୍ଦିର ପ୍ରଭୃତି ଧ୍ୱଂସବିଧ୍ୱଂସ କରିବାକୁ ଲାଗିଲେ । ହିନ୍ଦୁମାନଙ୍କ ଉପରେ ଜିଜିଆ କର ବସାଇଲେ । ବାଦଶାହ ହେଲା ପରେ ଗାଜୀ ହେବା ନିମିତ୍ତ ତାଙ୍କର ପ୍ରବଳ ଆକାଂକ୍ଷା ହେଲା ।

ଜାମା ମସଜିଦ୍ ସମ୍ମୁଖରେ ହିନ୍ଦୁ-ମୁସଲମାନ ଏବଂ ଶିଖମାନଙ୍କର ଭିଡ଼ ଲାଗିଥାଏ । ମଝିରାସ୍ତାରେ ଲଙ୍ଗଳା ଫକୀର ସରମଦ ଠିଆ ହୋଇ ହସୁଥିଲା ।

ବାଦଶାହ ନମାଜ ପଢ଼ି ସାରି ବାହାରକୁ ଆସିଲେ । ଲୋକମାନେ ଦଣ୍ଡାୟମାନ ହୋଇ ରାଜାଙ୍କର ଜୟ ଜୟକାର କରିବାକୁ ଲାଗିଲେ, ମାତ୍ର ସରମଦ ସେମିତି ଠିଆ ହୋଇ ରହିଥିଲା ।

ବାଦଶାହ କହିଲେ–''ଶୁଣାଯାଏ ଯେ ତୁ ମୁସଲିମ୍ ଫକୀର ହୋଇ ମଧ୍ୟ ନାସ୍ତିକ ପରି କଥା କହିଥାଉ । ପୁଣି ପବିତ୍ର ମସଜିଦ୍ ସମ୍ମୁଖରେ ଏମିତି ଲଙ୍ଗଳା ହୋଇ ଠିଆ ହୋଇଛୁ?''



ଫକୀରର ମୁଖମଣ୍ଡଳରେ ଏକପ୍ରକାର ଜ୍ୟୋତିର ଝଲକ ଦେଖାଗଲା । ସେ କହିଲା, ବାଦଶାହ! ଆଲ୍ଲା ସବୁ ସ୍ଥାନରେ ରହିଛନ୍ତି । ମସଜିଦ୍, ମନ୍ଦିର, ଗିର୍ଜା ଏବଂ ଗୁରୁଦ୍ୱାର–ସବୁଠାରେ । ମୋ ଦୃଷ୍ଟିରେ ସମସ୍ତ ଧର୍ମପୀଠ ପବିତ୍ର । ନାସ୍ତିକତା କେବଳ ତୁମର ମୌଲବୀମାନେ ପ୍ରଚାର କରୁଛନ୍ତି । ସେମାନେ ଆଲ୍ଲାଙ୍କୁ କେବଳ ମସ୍‌ଜିଦ୍ ଏବଂ ପୁସ୍ତକରେ ବନ୍ଦୀ କରି ରଖିଛନ୍ତି । ତୁମେ ମୋତେ ଯେପରି ଲଙ୍ଗଳା ଆଖ୍ୟା ଦେଉଛ, ଏହା ତୁମର ସଂକୀର୍ଣ୍ଣତାର କଥା । ଯେତେବେଳେ ଖୁଦା ମୋତେ ଏବଂ ତୁମକୁ ପୃଥିବୀ ପୃଷ୍ଠକୁ ପଠାଇଥିଲେ, ସେତେବେଳେ ଆମେ ସମସ୍ତେ ଲଙ୍ଗଳା ହୋଇ ଆସିଥିଲେ କି ନାହିଁ? ତେଣୁ ତାଙ୍କ ଦରବାରରେ ମିଥ୍ୟା ଆବରଣର ପ୍ରୟୋଜନ କଣ?

ଔରଙ୍ଗଜେବ ଦେଖିଲେ ସରମଦ ତାଙ୍କ ସାମନାରେ ଛାତି ଫୁଲାଇ ନିର୍ଭୀକ ଭାବରେ ଠିଆ ହୋଇଛି, ଟିକିଏ ବି ଡରଭୟ ନାହିଁ । ଔରଙ୍ଗଜେବ ତ ଅତ୍ୟନ୍ତ ଧୂର୍ତ୍ତ ଥିଲେ, ତେଣୁ କଥାଟିକୁ ହସରେ ଟାଳିଦେଇ କହିଲେ, "ତୁମ କଥାରେ ମୁଁ ଅତ୍ୟନ୍ତ ଖୁସି । ଥରେ ତୁମକୁ ଦରବାରକୁ ଡାକି କଥାଭାଷା ହେବି ।"

ଏ ଘଟଣାରେ ହିନ୍ଦୁ ଓ ଶିଖମାନେ ମନେ ମନେ ଖୁସୀ ହେଲେ, ମାତ୍ର କଠୋରପନ୍ଥୀ କାଜୀ ଏବଂ ମୁଲ୍ଲାମାନେ କ୍ରୋଧିତ ହୋଇ ପଡ଼ିଲେହେଁ ଲୋକମାନଙ୍କର ସାମନାରେ ଚୁପ୍ ରହିଲେ । କିଛି ଦିନ ପରେ କାଜୀ ଏବଂ ମୁଲ୍ଲାମାନେ ବାଦଶାହଙ୍କ ନିକଟକୁ ଯାଇ କହିଲେ, "ହଜୁର! ସରମଦ ସବୁବେଳେ ଆଲ୍ଲାଙ୍କ ବିଷୟରେ ମନଇଚ୍ଛା କଥା କହି ନାସ୍ତିକତା ପ୍ରଚାର କରୁଛି ଏବଂ ପବିତ୍ର କୋରାନକୁ ବେଇଜ୍ଜତ କରୁଛି । ସେଟା ଏକ ନାରକୀୟ କୀଟ । ତାକୁ ଶୀଘ୍ର ନିପାତ କରନ୍ତୁ । ନହେଲେ ସେ ଇସଲାମ ଧର୍ମର ବହୁ କ୍ଷତି ଘଟାଇବ ।"

ଔରଙ୍ଗଜେବ ଏହି କଥା ଚାହୁଁଥିଲେ । ସେ ଚାହୁଁଥିଲେ ଲୋକମାନେ ସରମଦକୁ ଘୃଣା କରନ୍ତୁ । ତେବେ ଯାଇ ସେ ତାକୁ ଦୋଷୀ ସାବ୍ୟସ୍ତ କରି ମୃତ୍ୟୁଦଣ୍ଡ ଦେଇପାରିବେ । ସରମଦକୁ ବନ୍ଦୀ କରି ଆଣିବାକୁ ସିପାହୀମାନଙ୍କୁ ଆଦେଶ ହେଲା । ସିପାହୀମାନେ ତାକୁ ଧରିବାକୁ ଯାଇ ଜାଣିବାକୁ ପାଇଲେ ସେ ଦିଲ୍ଲୀ ଛାଡ଼ି ଚାଲିଯାଇଛି । ସେ ଯେଉଁଠିକୁ ଯାଉଥିଲା, ସେଠାରେ ଶହ ଶହ ଲୋକଙ୍କର ଭିଡ଼ ଜମି ଯାଉଥିଲା । ସେ କହୁଥିଲା, "ଖୁଦାଙ୍କର ଭାବ

ସମସ୍ତଙ୍କ ଠାରେ ସମାନ । ସେ ଅଦ୍ୱିତୀୟ ଏବଂ ସମସ୍ତେ ତାଙ୍କ ପାଇଁ ଏକାପରି ପ୍ରିୟ । ଲୋକ ଯେକୌଣସି ଧର୍ମାବଲମ୍ବୀ ହେଉ ସମସ୍ତେ ସମାନ । ହିନ୍ଦୁ-ମୁସଲମାନ ଭେଦଭାବ ସଂକୀର୍ଣ୍ଣ । ଖୁଦାଙ୍କର ନିଜ ଲୋକଙ୍କ ଉପରେ ଜିଜିୟା କର ଲଗାଇବା ଖୁଦାଙ୍କୁ ଅପମାନିତ କରିବା ।''

ସରମଦର ଏପରି କଥାକୁ ବାଦଶାହଙ୍କର ପାଖ ଲୋକମାନେ ଆହୁରି ଅତିରଞ୍ଜିତ କରି କହିବାକୁ ଲାଗିଲେ । ରାଜାଙ୍କ ଆଦେଶରେ ସିପାହୀମାନେ ତାକୁ ଧରି ରାତିରେ ଦିଲ୍ଲୀର ଲାଲକିଲା ଠାରେ ଏକ ଘରେ ରଖି ବାହାରୁ ତାଲା ପକାଇଦେଲେ ।

ଯଦିଓ ଫକୀରକୁ ବନ୍ଦୀ କରିବା କଥା ଗୁପ୍ତ ରଖାଯାଇଥିଲା, ତଥାପି କୌଣସି ପ୍ରକାରରେ ଏକଥା ବେଗମ ଏବଂ ବାଦଶାହଙ୍କର ଅଲିଅଳି କନ୍ୟା ଜୈବୁନ୍ନିସାଙ୍କ କାନରେ ପଡ଼ିଲା । ସେମାନେ ଫକୀର ସରମଦର ଚମତ୍କାରିତା ବିଷୟରେ ବହୁତ କିଛି ଶୁଣିଥିଲେ । ଶାହଜାଦୀ ବାଦଶାହଙ୍କ ନିକଟକୁ ଯାଇ କହିଲା–''ଅବ୍ବା ହଜୁର, ଫକୀରକୁ ବନ୍ଦୀ କରିବା ଠିକ୍ ହୋଇନି । ସେ ବହୁତ ଉଚ୍ଚସ୍ଥିତିପ୍ରାପ୍ତ ଫକୀର । ଆମର ଆପଣଙ୍କ ଠାରେ ବିନମ୍ର ନିବେଦନ– ଆପଣ ତାକୁ ମୁକ୍ତ କରି ତାର ଦେଶ ଇରାନ୍‌କୁ ପଠାଇ ଦିଅନ୍ତୁ । ଆପଣଙ୍କର ନିର୍ଦ୍ଦେଶ ହେଲେ ମୁଁ ଯାଇ ଥରେ ସରମଦକୁ ବୁଝାସୁଝା କରିବି, ସେ ନ ମାନିଲେ ଆପଣଙ୍କ ଇଚ୍ଛା ଯାହା ହେବ କରିବେ ।''

ଔରଙ୍ଗଜେବଙ୍କର ଏକଥାରେ ମନ ମାନିଗଲା । ସେ ସରମଦ ସମ୍ବନ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ କରିବାରେ ବିଳମ୍ବ କଲେ । ସେ ଭାବିଲେ, କିଛି ଦିନପରେ ମୁଲ୍ଲାମାନଙ୍କର ମୁଣ୍ଡ ଥଣ୍ଡା ହୋଇଯିବ ।

ଶାହଜାଦୀ ସରମଦ ନିକଟକୁ ଲାଲକିଲା ଗଲା । ସେ ସରମଦକୁ କହିଲା, ''ବାବା! ଆପଣ ଜଣେ ସଚ୍ଚୋଟ–ପବିତ୍ର ଔଲିଆ (ମୁସଲିମ୍ ସାଧୁ) ଅଟନ୍ତି । ଲୋକମାନେ ଆପଣଙ୍କୁ ସମ୍ମାନ କରନ୍ତି ଏବଂ ଆପଣଙ୍କ କଥା ମାନନ୍ତି । ଆପଣ ପବିତ୍ର ଇସଲାମ୍ ଧର୍ମର ପ୍ରଚାର କରିବା ଉଚିତ । ଏଥିରେ ମୁଁ ଆପଣଙ୍କୁ ସବୁ ପ୍ରକାରରେ ସାହାଯ୍ୟ କରିବି । କଠୋର ପନ୍ଥୀ ମୁଲ୍ଲାମାନେ ଆପଣଙ୍କର କିଛି ଅସୁବିଧା କରିବେ ନାହିଁ । ମୁଁ ଆପଣଙ୍କ ନିକଟରେ ୧୦/ ୨୦ ସିପାହୀ ରଖିଦେବି । ଏପର୍ଯ୍ୟନ୍ତ ଆପଣଙ୍କ ସହିତ ଯେଉଁ ବ୍ୟବହାର ହେଲା, ସେଥିପାଇଁ ଆମେ ଲଜ୍ଜିତ ।''

ସରମଦ ହସିଦେଇ କହିଲା–"ଶାହଜାଦୀ! ଯିଏ ସର୍ବଶକ୍ତିମାନ୍ ଆଲ୍ଲାଙ୍କର ତତ୍ତ୍ୱାବଧାନରେ ଅଛି, ତା ପାଇଁ ସିପାହୀ ଜଗୁଆଳୀମାନଙ୍କର ପ୍ରୟୋଜନ କଣ? ମୁଁ ମୁସଲମାନ କି ହିନ୍ଦୁ ନୁହଁ, ମୁଁ ଜଣେ ସାଧାରଣ ମନୁଷ୍ୟ। କାଳେ ମୁଁ ଅଭିଶାପ ଦେବି, ସେଥିପାଇଁ ତୁମର ଭୟ ଜାତ ହେଉଛି କି? କିନ୍ତୁ ଜାଣି ରଖ, ସରମଦ ମନରେ କାହା ପ୍ରତି ବିଦ୍ୱେଷ ଭାବ ନାହିଁ। ସେ ସମସ୍ତଙ୍କର ଭଲ ଗ୍ରହିଁଥାଏ। ତୁମେ ମୋଗଲ ବଂଶରେ ଜଣେ ମାନ୍ୟଗଣ୍ୟ ବ୍ୟକ୍ତି। ବାଦଶାହ ତୁମ କଥା ମାନନ୍ତି। ଏଣୁ ତୁମର କର୍ତ୍ତବ୍ୟ ହେଉଛି– ନିର୍ଦ୍ଦୋଷ ବ୍ୟକ୍ତିଙ୍କର ଦୁଃଖ ଦୂର କରିବା। ତୁମେ ତୁମର ବାପାଙ୍କୁ କୁହ, ସେ ମନ୍ଦିର ଏବଂ ଗୁରୁଦ୍ୱାର ଧ୍ୱଂସ କରିବା ବନ୍ଦ କରନ୍ତୁ ଏବଂ ଜିଜିୟା କର ଯଥାଶୀଘ୍ର ବନ୍ଦ କରନ୍ତୁ। ତୁମେମାନେ ଖୁଦାଙ୍କୁ ଛୋଟ କରି ଦେଉଛ। ତୁମର ପିତା ଏବେ ଠାରୁ ସତର୍କ ନହେଲେ ତାଙ୍କୁ ଜୀବନରେ ଶାନ୍ତି ମିଳିପାରିବ ନାହିଁ। ଏତେ ବଡ଼ ସାମ୍ରାଜ୍ୟ କିଛି ବର୍ଷ ମଧ୍ୟରେ ନଷ୍ଟଭ୍ରଷ୍ଟ ହୋଇଯିବ।"

ଶାହଜାଦୀ ମଧ୍ୟ କଠୋରପନ୍ଥୀ ଥିଲା। ସେ ଫକୀର କଥାରେ ଅତ୍ୟନ୍ତ କ୍ରୋଧିତ ହେଲା। ସେ ବାଦଶାହଙ୍କ ନିକଟକୁ ଯାଇ କହିଲା–"ଆବା ହଜୁର! ମୋତେ ଲାଗୁଛି ସେ ଫକୀର ପାଗଳ ନୁହେଁ, ସେ ଏକ ବଦମାସ। ତାକୁ ଯେତେ ଶୀଘ୍ର ହତ୍ୟା କରାଯାଉ।" ପରଦିନ ବାଦଶାହ ତାକୁ ଦେବାନ-ଏ-ଆମ୍‌କୁ ଡାକିଲେ। ସେ ହୁକୁମ୍ କଲେ–"ଏ ଫକୀର, ତୁ ମୋତେ କଲମା ପଢ଼ି ଶୁଣା।" ସରମଦ କହିଲା–"ଲା ଇଲାହ–ଇଲ୍ଲିଲ୍ଲାହ।" "ଏ ତ ଅପୂର୍ଣ୍ଣ ଅଟେ। ତାର ପରର କଥା କହ।" "ଔରଙ୍ଗଜେବ! ସରମଦ ଯେଉଁ କଥାକୁ ଠିକ୍ ବୋଲି ଭାବୁ ନାହିଁ, ସେ ସେ କଥା କିପରି କହିବ? ମୁଁ ଏକଥା ସ୍ୱୀକାର କରିପାରିବି ନାହିଁ ଯେ କେବଳ ମହମ୍ମଦ ହିଁ ଖୁଦାଙ୍କର ଏକମାତ୍ର ପ୍ରତିନିଧି। ମୋର ବୁଝିବାରେ ବୁଦ୍ଧ, ଈସା ଏବଂ ନାନକ ମଧ୍ୟ ଖୁଦାଙ୍କର ପ୍ରତିନିଧି ଅଟନ୍ତି।"

ବାଦଶାହ ଅତ୍ୟନ୍ତ କ୍ରୋଧରେ ଜର୍ଜରିତ ହେଲେ ଏବଂ ଆଦେଶ ଦେଲେ ଯେ ଏ ଫକୀରର ମୁଣ୍ଡ ଗଣ୍ଡି ଅଲଗା କରି ତାର ଲାସ୍‌କୁ କୁକୁରମାନଙ୍କ ଆଗରେ ପକାଇଦିଅ। ଏ ବେଇମାନ ଅନ୍ୟ କାଫିରମାନଙ୍କ ସହିତ ମହମ୍ମଦଙ୍କୁ ସମାନ କରୁଛି।

ସରମଦକୁ ହତ୍ୟା କରିବା ସ୍ଥାନକୁ ନିଆଗଲା । ସେଠାରେ ହଜାର ହଜାର ଲୋକ ଛାତି ପିଟି କରୁଣ କ୍ରନ୍ଦନ କରୁଥିଲେ । ସରମଦ ହସି ହସି କହିଲା, "ହେ ବନ୍ଧୁଗଣ! ମଂସୁରର ଶୂଳି ଘଟଣା ବହୁତ ପୁରୁଣା ହୋଇଯାଇଥିଲା । ଏବେ ମୋ ହତ୍ୟାରେ ତାହା ପୁଣି ନୂଆ ହୋଇଯିବ ।"

ଯେତେବେଳେ ହତ୍ୟାକାରୀ ତରବାରୀ ନେଇ ଆସିଲା, ସରମଦ ଅତ୍ୟନ୍ତ ପ୍ରେମପୂର୍ଣ୍ଣ ଦୃଷ୍ଟିରେ ଗ୍ୱହିଁ କହିବାକୁ ଲାଗିଲା– "ହେ ମୋର ପ୍ରିୟ ବନ୍ଧୁ! ତୁମେ ଆସିଗଲ? ତୁମେ ଯେଉଁ ରୂପରେ ଆସନା କାହିଁକି ମୁଁ ତୁମକୁ ଚିହ୍ନି ପାରିବି । କାରଣ ଏ ସଂସାରର ପ୍ରତ୍ୟେକ କଣିକାରେ ମୁଁ ତୁମକୁ ଦେଖିପାରୁଛି ।"

ସରମଦର ଶିରଛିନ୍ନ କଲା ହତ୍ୟାକାରୀ । ମୁଣ୍ଡ ଗଣ୍ଡି ଅଲଗା ହୋଇଗଲା ।

ଏହା ବହୁ ପୁରାତନ ବିଷୟ । ଏହା ମଧ୍ୟରେ କେତେ କେତେ ରାଜା ବାଦଶାହ, ଅମୀର ଆସିଛନ୍ତି ଏବଂ ଗ୍ୱଲିଯାଇଛନ୍ତି । ମାତ୍ର ଏବେ ବି ଜାମାମସଜିଦ୍‌ର ଗୋଟିଏ କୋଣରେ ସାଧାରଣ କବରଟିଏ ଅଛି । ସେଇ କବର ନିକଟକୁ ଶହ ଶହ ସ୍ତ୍ରୀପୁରୁଷ ଆସି ଫୁଲ ଚଢ଼ାଇ ଥାଆନ୍ତି ଏବଂ ସେମାନେ ସେମାନଙ୍କର ପିଲାପିଲିଙ୍କର ମଙ୍ଗଳ କାମନା କରିଥାଆନ୍ତି ।



# ଦୁଇ ସିଂହ ମଧ୍ୟରେ ଲଢ଼ାଇ

ସପ୍ତଦଶ ଶତାବ୍ଦୀରେ ରାଜସ୍ଥାନର ବିଭିନ୍ନ ରାଜ୍ୟରେ କେତେଜଣ ଅଦ୍ଭୁତ ପ୍ରତିଭାଶାଳୀ ରାଜା ଥିଲେ । ସେମାନଙ୍କ ମଧ୍ୟରେ ମେବାଡ଼ର ରାଣା ରାଜସିଂହ, ଯୋଧପୁରର ଯଶୋବନ୍ତସିଂହ ଏବଂ ଜୟପୁରର ମିର୍ଜା ରାଜା ଜୟସିଂହଙ୍କ ନାମ ଉଲ୍ଲେଖନୀୟ । ଯଶୋବନ୍ତ ସିଂହ ଏବଂ ଜୟସିଂହ ଶାହାଜାନ ଏବଂ ଔରଙ୍ଗଜେବଙ୍କର ଆଲା-ସେନାପତିମାନଙ୍କ ମଧ୍ୟରେ ଥିଲେ ।

୧୬୪୦ ମସିହାର କଥା । ଔରଙ୍ଗଜେବଙ୍କୁ ସେତେବେଳେ ବାଇଶବର୍ଷ । ସେ ଦାକ୍ଷିଣାତ୍ୟରେ ଅନେକ ବଡ଼ ବଡ଼ ଯୁଦ୍ଧ ଜୟ କରି ଫେରିଥିଲେ । ମୁଲ୍ଲା ଏବଂ ମୌଲବୀମାନେ ତାଙ୍କର ବାହାଦୁରୀ ଏବଂ ଇସ୍‌ଲାମ ଧର୍ମର ପ୍ରଚ୍ଚାର କରୁଥିଲେ । ଏହି ସମୟରେ ଯୋଧପୁରର ଯୁବକ ରାଜା ଯଶୋବନ୍ତସିଂହ ମୋଗଲ ଦରବାରରେ ରହିବା ନିମିତ୍ତ ଆଗ୍ରା ଆସିଲେ ।

ଏହା ଏକପ୍ରକାର ନିୟମ ଥିଲା ଯେ ଛୋଟ ଅଞ୍ଚଳର ରାଜା କିମ୍ବା ଯୁବରାଜଙ୍କ ମଧ୍ୟରୁ କୌଣସି ବ୍ୟକ୍ତି ବାଦଶାହଙ୍କ ସେବାରେ ରହିବେ । ମହାରାଜ ଯଶୋବନ୍ତ ସିଂହଙ୍କ ସହିତ ତାଙ୍କର ରାଣୀମାନେ ଏବଂ କେତେକ ଜାଗିରଦାର ମଧ୍ୟ ଆସିଥିଲେ । ଜାଗିରଦାରଙ୍କ ମଧ୍ୟରେ ଆସୋପର କ୍ଷତ୍ରିୟ ଯୁବକ ମୁକୁନ୍ଦ ଦାସ ଥିଲେ ଅନ୍ୟତମ । ଯୋଧପୁରରୁ ଆଗ୍ରା ପର୍ଯ୍ୟନ୍ତ ତାଙ୍କର ବାହାଦୁରୀ ବିଷୟରେ ସମସ୍ତେ ଜାଣିଥିଲେ ।

ବାଦଶାହ ଶାହାଜାନଙ୍କର ଦରବାର ଚ୍ଚଳିଥାଏ । ମାନ୍ୟଗଣ୍ୟ ବ୍ୟକ୍ତି ନିଜ ନିଜର ଆସ୍ଥାନରେ ବସିଥାଆନ୍ତି । ବାଦଶାହଙ୍କ ଡାହାଣ ପାଖରେ ଯୁବରାଜ ଦାରାଶିକୋହ ବସିଥିଲେ ଏବଂ ବାମ ପାଖରେ ଥିଲେ ଔରଙ୍ଗଜେବ ।

ମହାରାଜ ଯଶୋବନ୍ତ ସିଂହ ନିଜର ସରଦାରଙ୍କ ସହିତ ଦରବାର ଆଡ଼କୁ ଆଗେଇ ଚ୍ଚଳିଲେ । ଲୋକମାନେ ଦେଖିଲେ ଦୈତ୍ୟ ସଦୃଶ ଏକ ଦୀର୍ଘକାୟ ଚଉଡ଼ା ଛାତିବାଲା ଯୁବକ ସିଂହ ପରି ନିର୍ଭୟ ଭଙ୍ଗୀରେ ଆଗଭର ହେଉଅଛି । ତାର ଚଉଡ଼ା ଛାତି, ଲମ୍ବା ଲମ୍ବା ହାତ ଏବଂ ଉନ୍ନତ ଲଲାଟ ଏବଂ ବଳିଷ୍ଠ ଚେହେରା ସମସ୍ତଙ୍କୁ ଆକର୍ଷିତ କରିଥିଲା । ଯେହେତୁ ସେ ନୂଆ କରି ଶାହୀ ଦରବାରକୁ ଆସିଥିଲା, ସେଠାକାର ରୀତି ନୀତି ବିଷୟରେ ତାକୁ ବିଶେଷ ଜଣା ନଥିଲା । ସେ ବାଦଶାହଙ୍କ ଉପରେ ଦୃଷ୍ଟି ନିକ୍ଷେପ

କରିବା ପରେ ତାଙ୍କୁ ପଛକରି ଫେରିବାକୁ ଆରମ୍ଭ କଲା । ମାତ୍ର ବାଦଶାହ ତାର ଅଙ୍ଗସୌଷ୍ଠବରେ ଏପରି ବିମୁଗ୍ଧ ହେଇ ପଡ଼ିଥିଲେ ଯେ ତାର ଧୃଷ୍ଟତା ତାଙ୍କ ନଜରରେ ପଡ଼ିନଥିଲା ।

ଔରଙ୍ଗଜେବ ସେ ସମୟରେ ଗୋଟିଏ ପାଗଳା ହାତୀକୁ ବଶୀଭୂତ କରିବାରେ ସମର୍ଥ ହୋଇଥିଲେ । ତେଣୁ ସେ ନିଜକୁ ବଡ଼ ବାହାଦୁର ବୋଲି ଭାବୁଥିଲେ । ମୁକୁନ୍ଦଦାସ ଉପରେ ତାଙ୍କର ଦୃଷ୍ଟି ପଡ଼ିବାରୁ ସେ ଈର୍ଷ୍ୟାନ୍ୱିତ ହୋଇ ପଡ଼ିଲେ । ଔରଙ୍ଗଜେବ ବାଦଶାହଙ୍କ କାନରେ ମୁକୁନ୍ଦଦାସ ବିରୁଦ୍ଧରେ ସର୍ବଦା କହିବାକୁ ଲାଗିଲେ । ସେ କହିଲେ-''ଆବ୍‌ବା ହଜୁର! ଏହି ନୂଆ ରାଜପୁତ୍ ମହାମୂର୍ଖ ଅଟେ ଏବଂ ଉଦ୍ଦଣ୍ଡ ମଧ୍ୟ । ଏହାର କାରଣ ତାର ବଳ । ଏହି ରାଜପୁତ ଭବିଷ୍ୟତରେ ରାଜ୍ୟ ପାଇଁ ବିପଦ ସୃଷ୍ଟି କରିପାରେ । ତେଣୁ ଯଥାଶୀଘ୍ର ସଫା କରିଦେବା ଉଚିତ ।''

କିଛି ଦିନ ବାଦଶାହ ଏକଥାରେ କର୍ଣ୍ଣପାତ କଲେ ନାହିଁ । ମାତ୍ର ତାଙ୍କର ଆଦରର କନ୍ୟା ରୋଶନ ଆରା ମଧ୍ୟ ଔରଙ୍ଗଜେବଙ୍କ ପରି ପିତାଙ୍କ କାନରେ ତା ବିରୁଦ୍ଧରେ ନାନାପ୍ରକାର କଥା କହିବାକୁ ଲାଗିଲା । ଦିନେ ଭରପୂର ଦରବାରରେ ବାଦଶାହ ଯଶୋବନ୍ତ ସିଂହଙ୍କୁ କହିଲେ, ''ଆପଣଙ୍କର ଯୁବକ ସରଦାର ମୁକୁନ୍ଦ ଦାସଙ୍କର ବାହାଦୁରୀ ଏବଂ ବଳ ବିଷୟରେ ଖୁବ୍ ଶୁଣିଛି । ଏକଥାର ପରୀକ୍ଷା ନିମିତ୍ତ ମୁଁ ଇଚ୍ଛା କରୁଛି ଯେ ସେ ଶାହୀ ଶେର (ସିଂହ) ବାଜବାହାଦୁର ସହିତ କୁସ୍ତି କରୁ ।''

ମହାରାଜ ଘୋର ସଙ୍କଟରେ ପଡ଼ିଗଲେ ଏବଂ କହିଲେ-''ହଜୁର! ବୋଧହୁଏ ଆପଣ ଏହି ଯୁବକ ଉପରେ କୌଣସି କାରଣରୁ କ୍ଷୁବ୍ଧ ହୋଇଛନ୍ତି; ଥରକ ପାଇଁ ତାକୁ କ୍ଷମା କରି ଦିଅନ୍ତୁ ।''

ଶାହଜାଦା ଔରଙ୍ଗଜେବ କହିଲେ-''ମହାରାଜ ଯଶୋବନ୍ତ ସିଂହ! ମୁଁ ଶୁଣିଛି ମୁକୁନ୍ଦ ଦାସଙ୍କର କୌଣସି ହିନ୍ଦୁଦେବୀ ଇଷ୍ଟ, ଯାହାଙ୍କର ବାହନ ସିଂହ । ତେଣୁ ଆପଣ କାହିଁକି ଭୟ କରୁଛନ୍ତି । ତାର ଇଷ୍ଟଦେବୀ ତାକୁ ସାହାଯ୍ୟ କରିବେ ।''

ଯଶୋବନ୍ତ ସିଂହ ସମସ୍ତ ଷଡ଼ଯନ୍ତ୍ର ବୁଝିପାରିଲେ । ସେ ଜାଣିଗଲେ ଯେ ଔରଙ୍ଗଜେବ ମୁକୁନ୍ଦଦାସଙ୍କୁ କୌଣସି ପ୍ରକାରେ ମାରିବାକୁ ଚାହୁଁଛନ୍ତି । ତାଙ୍କୁ ଏଥିରୁ ଉଦ୍ଧାର କରିବାର କୌଣସି ଉପାୟ ନଥିବାରୁ ସେ ଉକ୍ତ ପ୍ରସ୍ତାବରେ ସମ୍ମତି ପ୍ରଦାନ କଲେ ।

ଯୁବକ ମୁକୁନ୍ଦଦାସ ମହାରାଣୀ ମହାମାୟା ତଥା ଅନ୍ୟ ସମସ୍ତଙ୍କର ପ୍ରିୟ ପାତ୍ର ଥିଲେ। ମୁକୁନ୍ଦଦାସଙ୍କର ବଳବୀର୍ଯ୍ୟରେ ସେମାନଙ୍କର ଆସ୍ଥା ଅତୁଟ ଥିଲା। ସେମାନଙ୍କର ମତରେ ମୁକୁନ୍ଦଦାସଙ୍କ ସମକକ୍ଷ ଅନ୍ୟ କୌଣସି ବ୍ୟକ୍ତି ନାହାନ୍ତି। ଯେହେତୁ ମହାରାଜା ସମ୍ମତି ପ୍ରଦାନ କରିସାରିଛନ୍ତି। ତେଣୁ ମୁକୁନ୍ଦଦାସଙ୍କର ସିଂହ ସହିତ ଲଢ଼ିବା ବ୍ୟତୀତ ଅନ୍ୟ କୌଣସି ପନ୍ଥା ନଥିଲା।

ଆଗ୍ରା ଏବଂ ଦିଲ୍ଲୀରେ ଢୁଙ୍ଗୁରା ପିଟି ଜଣାଇ ଦିଆଗଲା ଯେ ଅମୁକ ଦିନ ସିଂହ ସହିତ ମୁକୁନ୍ଦଦାସଙ୍କର ଲଢ଼ାଇ ହେବ। ଏହି ଲଢ଼ାଇ ଦେଖିବା ପାଇଁ ହଜାର ହଜାର ସଂଖ୍ୟାରେ ସ୍ତ୍ରୀପୁରୁଷ ଏକାଠି ହେଲେ। ହିନ୍ଦୁ ନାଗରିକ ଦୁଃଖୀ ହୋଇ ଯାଇଥିବା ବେଳେ ମୁସଲମାନମାନେ ବଡ଼ ଆନନ୍ଦିତ ଥିଲେ।

ବାଦଶାହ ଏବଂ ଔରଙ୍ଗଜେବ କିଲ୍ଲାର ଉପର ମହଲାରେ ବସିଥିଲେ। ତାଙ୍କ ପଛରେ ବେଗମ ଏବଂ ଶାହଜାଦୀ (କନ୍ୟା) ମଧ୍ୟ ବସିଥିଲେ। ସେଠାରେ ଏପରି ଭିଡ଼ ଜମିଥିଲା ଯାହାକି କେବେ ଦେଖାଯାଇ ନଥିଲା।

ଯେତେବେଳେ ମୁକୁନ୍ଦଦାସ ଢାଲ ତରବାରୀ ଧରି କିଲାର ପ୍ରାଙ୍ଗଣରେ ପ୍ରବେଶ କଲେ, ତାଙ୍କର ନିର୍ଭୀକତା ଲକ୍ଷ୍ୟ କରି ଲୋକମାନେ ତଟସ୍ଥ ହୋଇ ଯାଇଥିଲେ। ଆସନ୍ନ ମୃତ୍ୟୁର ସମ୍ମୁଖୀନ ହୋଇ ସୁଦ୍ଧା ବୀର ମୁକୁନ୍ଦ ବୀରଦର୍ପରେ ମଥା ଉଞ୍ଚା କରି ମତ୍ତହସ୍ତୀ ସମାନ ଚାଲି ଆସୁଥିଲେ। ଏହି ଲଢ଼ାଇ ପାଇଁ ସିଂହକୁ କିଛି ଦିନ ଉପାସ ରଖାଯାଇଥିଲା। ପିଞ୍ଜରାବଦ୍ଧ ସିଂହକୁ କିଲାପଡ଼ିଆକୁ ଅଣାଗଲା। ସିଂହ ପିଞ୍ଜରା ମଧ୍ୟରେ ଗର୍ଜନ କରୁଥାଏ। ଔରଙ୍ଗଜେବ କହିଲେ– ଆମର ସିଂହ ପାଖରେ ତ କିଛି ନାହିଁ, ମାତ୍ର ମୁକୁନ୍ଦଦାସ ଢାଲ-ତରବାରୀ ଧରିଅଛି। ଯଦି ମୁକୁନ୍ଦ ବିନା ଅସ୍ତ୍ରରେ ସିଂହ ସହିତ ଲଢ଼ାଇ କରେ, ତେବେ ସିନା ବାହାଦୁରୀ ଜଣା ପଡ଼ିବ। ମହାରାଜାଙ୍କ ଇଶାରାରେ ମୁକୁନ୍ଦଦାସ ଢାଲ ତରବାରୀ ଫିଙ୍ଗିଦେଲେ। ସିଂହକୁ ଇତିମଧ୍ୟରେ ପିଞ୍ଜରାରୁ ଖୋଲି ଦିଆଯାଇଥିଲା। ଲୋକମାନେ ଭୟଭୀତ ହୋଇ ଲଢ଼ାଇ ଦେଖିବା ପାଇଁ ଏକଲୟରେ ଚାହିଁ ବସିଥିଲେ।

ମୁକୁନ୍ଦଦାସ ପିଞ୍ଜରା ସାମନାରେ ଠିଆ ହୋଇ ସିଂହକୁ ଚିହାଉ ଥିଲେ, ତାର ଆଖି ପ୍ରଜ୍ୱଳିତ ଥିଲା। ସିଂହଟା ଗର୍ଜନ କରି ମୁକୁନ୍ଦଦାସଙ୍କ ଆଡ଼କୁ କୁଦିପଡ଼ିଲା। ସେ କୌଣସି ପ୍ରକାରେ ସାହସ ନ ହରାଇ ତୁରନ୍ତ ତାର ଦୁଇ ଆଗଗୋଡ଼କୁ ଧରି ପିଞ୍ଜରା ମଧ୍ୟକୁ ଫୋପାଡ଼ି ଦେଲେ। ସିଂହଟା ଲୋହପିଞ୍ଜରା



ମଧ୍ୟରେ ଥିବା ଲୁହା ବାଡ଼ରେ ମାଡ଼ ଖାଇ କିଛି ସମୟ ପାଇଁ ଅଚେତ ହୋଇ ପଡ଼ିରହିଲା । ଏହାପରେ ମୁକୁନ୍ଦଦାସ ସିଂହକୁ ବାହାରକୁ ଆସିବାକୁ ଟିହାଇଲେ । ମାତ୍ର ସିଂହଟା ଭୟରେ ଚୁପ୍ ହୋଇ ବସିରହିଲା ।

ବାଦଶାହ ଏ ଘଟଣାରେ ଚକିତ ହୋଇ ନିଜର ଲୋକମାନଙ୍କୁ ସିଂହଟାକୁ କିପରି ହେଲେ ପିଞ୍ଜରାରୁ ବାହାର କରିବାକୁ ଆଦେଶ ଦେଲେ, ମାତ୍ର ସେ କୌଣସି ମତେ ପିଞ୍ଜରାରୁ ବାହାରିଲା ନାହିଁ । ଅଗଣିତ ଜନତା ମୁକୁନ୍ଦଦାସଙ୍କର ଉଚ୍ଚସ୍ୱରରେ ଜୟକାର କଲେ । ଲୋକମାନଙ୍କ ମୁଖରୁ ମୁକୁନ୍ଦଦାସଙ୍କର ଭୂରି ଭୂରି ପ୍ରଶଂସା ଶୁଣି ବାଦଶାହ କୁସ୍ତି ଶେଷ ହେଲା ବୋଲି ଘୋଷଣା କଲେ ଏବଂ ମୁକୁନ୍ଦଦାସଙ୍କୁ ପାଖକୁ ଡାକି ତାଙ୍କ ବେକରେ ନିଜେ ପିନ୍ଧିଥିବା ମୋତି ମାଳ ଝୁଲାଇଦେଲେ । ତା' ପରଦିନ ଦରବାରରେ ସେ ଘୋଷଣା କଲେ– ''ମହାରାଜ ଯଶୋବନ୍ତ ସିଂହ! ଆପଣଙ୍କର ସିଂହ ସତରେ ବଡ଼ ବାହାଦୁର ଅଟେ । ମୁଁ ମୁକୁନ୍ଦଦାସଙ୍କୁ 'ନାହାର ସିଂହ' ଉପାଧି ପ୍ରଦାନ କରୁଛି ।'' ଯଶୋବନ୍ତ ସିଂହ ଜାଣି ପାରିଲେ ଯେ ଏଥର ସିନା ମୁକୁନ୍ଦ ଜୀବନ ପାଇଗଲେ, ମାତ୍ର ଭବିଷ୍ୟରେ ବିପଦ ଭରିରହିଅଛି । ଔରଙ୍ଗଜେବ ଶଠତାରେ ମୁକୁନ୍ଦଙ୍କୁ ହତ୍ୟା କରିପାରେ ।

କିଛି ଦିନ ପରେ ସେ ମୁକୁନ୍ଦଙ୍କୁ ଯୋଧପୁର ପଠାଇ ଦେଇଥିଲେ ।



# ତାନସେନ୍ ଓ ତାନା-ରୀରୀ

ପ୍ରସିଦ୍ଧ ବ୍ୟକ୍ତିମାନଙ୍କ ସଂପର୍କରେ ନାନା ରକମର ଜନଶ୍ରୁତି ଥାଏ। ସନ୍ଥ କବୀରଙ୍କୁ କେତେକ ହିନ୍ଦୁ କହୁଥିଲେ ଓ ଅନ୍ୟ କେତେକ ମୁସଲମାନ କହୁଥିଲେ। ଠିକ୍ ଏହିପରି ତାନସେନ୍‌ଙ୍କ ବିଷୟରେ ମଧ୍ୟ ଭ୍ରମ ରହିଛି। ଇତିହାସର ଅନୁଶୀଳନରୁ ଜଣାପଡ଼େ ଯେ ତାନସେନ୍ ନାଗର ବ୍ରାହ୍ମଣ ଥିଲେ। ତାଙ୍କର ପୂର୍ବଜ ଗୁଜୁରାଟରୁ ଆସି ଗ୍ୱାଲିଅର ନିକଟରେ ବସତି ସ୍ଥାପନ କରିଥିଲେ।

ସେ ଆକବରଙ୍କ ନବରତ୍ନ ମଧ୍ୟରେ ଅନ୍ୟତମ ଥିଲେ ଓ ବାଦଶାହ ତାଙ୍କୁ ଶ୍ରଦ୍ଧାରେ ମିଆଁ ତାନସେନ୍ ଡାକୁଥିଲେ। ଏହି 'ମିଆଁ' ଶବ୍ଦ ଯୋଗୁଁ ବ୍ରାହ୍ମଣ ତାନସେନ୍‌ଙ୍କର ଧର୍ମ ସଂବନ୍ଧରେ ଭୁଲ୍ ଧାରଣା ହୋଇଥିଲା।

ତାନସେନ୍ ଅଦ୍ଭୁତ ପ୍ରତିଭାସଂପନ୍ନ ଥିଲେ। ତାଙ୍କର ସୁମଧୁର ସ୍ୱର ଓ ରସପୂରିତ ହୃଦୟ ଥିଲା। ନାଗର କୁଳରେ ଜନ୍ମହେତୁ ସାତ୍ତ୍ୱିକତା ଓ ସଂସ୍କାର ଜନ୍ମଜାତ ଥିଲା। ଭକ୍ତ ପରିବାରରେ ଜନ୍ମ ହୋଇ, ଭଜନ, କୀର୍ତ୍ତନ ଆଦିର ବାତାବରଣରେ ବଢ଼ିବାରୁ ତାଙ୍କର ସଂଗୀତ ପ୍ରତି ଶ୍ରଦ୍ଧା ବଢ଼ିବାକୁ ଲାଗିଲା। ବୃନ୍ଦାବନ ଧାମ ଯାଇ ସ୍ୱାମୀ ହରିଦାସଙ୍କ ଠାରୁ ସଂଗୀତ ଶିକ୍ଷା କଲେ। ଗୁରୁଙ୍କ ଆଶୀର୍ବାଦରେ ଦୀପକ ରାଗର ସଂପୂର୍ଣ୍ଣ ଜ୍ଞାନ ଓ ଅନୁଭବ ପ୍ରାପ୍ତ ହେଲେ।

ଏହି ବିଶିଷ୍ଟ ସଂଗୀତଜ୍ଞଙ୍କୁ ବାନ୍ଧବଗଡ଼ର ରାଜା ରାମଚନ୍ଦ୍ରଦେବ ତାଙ୍କ ଦରବାରକୁ ଆମନ୍ତ୍ରଣ କଲେ। ସେଠାରେ ସେ ବିଭିନ୍ନ ରାଗରାଗିଣୀରେ କାବ୍ୟ ରଚନା କଲେ। କବୀର, ସୁରଦାସ, ତୁଳସୀଦାସ ଇତ୍ୟାଦିଙ୍କ ଭଜନ ପରି ତାଙ୍କର ରଚନା ଶାସ୍ତ୍ରୀୟ ସଂଗୀତ କ୍ଷେତ୍ରରେ ଘରେ ଘରେ, ମନ୍ଦିରମାନଙ୍କରେ ଓ ଦରବାରମାନଙ୍କରେ ପ୍ରସିଦ୍ଧି ଲାଭ କଲା। ସମ୍ରାଟ ଆକବର ତାନସେନ୍‌ଙ୍କ ପ୍ରସିଦ୍ଧି ଶୁଣି ସେନାପତି ମୀର୍ଜା ଅଜିଜ୍‌ଙ୍କୁ ପଠାଇ ବାନ୍ଧବଗଡ଼ରୁ ନିଜ ଦରବାର ଆଗ୍ରାକୁ ନିମନ୍ତ୍ରଣ କଲେ। ହିନ୍ଦୁମାନେ ମନ୍ତ୍ର ଦ୍ୱାରା ଯଜ୍ଞାଗ୍ନି ପ୍ରଜ୍ୱଳିତ କରିବା କଥାରେ ବିଶ୍ୱାସ କରିପାରନ୍ତି, କିନ୍ତୁ ଜଣେ ମୁସଲମାନ ପକ୍ଷରେ ଏହା ବିଶ୍ୱସନୀୟ ନ ଥିଲା। ତଥାପି ଦୀପକ ରାଗର ମାହାତ୍ମ୍ୟ ବିଷୟରେ ଶୁଣି ଏବଂ ତାନସେନ୍‌ଙ୍କର ଏହି ରାଗରେ ବ୍ୟୁତ୍ପତ୍ତି ଅଛି ଜାଣି ତାଙ୍କୁ ଆଗ୍ରାରେ ବାସ କରିବାକୁ ସେ ଅନୁରୋଧ କଲେ। ତାନସେନ୍ ସମ୍ମତ ହେଲେ। ସେ

ବାଦଶାହଙ୍କ ସଂଗରେ ଶିକାର ଓ ବିଭିନ୍ନ ସ୍ଥାନକୁ ଯାତ୍ରା କରୁଥିଲେ । ତାଙ୍କ ଇଚ୍ଛା ମୁତାବକ ସଂଗୀତ ଶୁଣାଉଥିଲେ । ଏହିପରି ଭାବେ ଦୁଇ ଜଣଙ୍କ ମଧ୍ୟରେ ବନ୍ଧୁତ୍ୱ ବଢ଼ିଗଲା ।

ଥରେ ଦରବାରର ଲୋକମାନେ ତାନସେନ୍‌ଙ୍କ ସଂଗୀତ ଶୁଣିବାକୁ ବହୁତ ଆଗ୍ରହ ପ୍ରକାଶ କରିବାରୁ ବାଦଶାହ ସମ୍ମତି ପ୍ରଦାନ କଲେ । ଦରବାର ଶ୍ରୋତାମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇଥାଏ । ସେମାନଙ୍କ ମଧ୍ୟରେ କେତେକ ତାନସେନ୍‌ଙ୍କ କଳାନୈପୁଣ୍ୟ ଦେଖିବାକୁ ଉତ୍ସୁକ ଥିଲେ ଓ ଅନ୍ୟ କେତେକ ତାଙ୍କ କଳାର ଦୋଷ ବାଛିବାକୁ ଅଧୀର ହେଉଥିଲେ । ଆକବର ପହଞ୍ଚିଲେ ଓ କହିଲେ ମିଆଁ ତାନସେନ୍ ଆପଣ ଆରମ୍ଭ କରନ୍ତୁ । ଧ୍ରୁପଦ ରାଗରେ ଗାନ କରନ୍ତୁ । ତାନସେନ୍ ମୁଣ୍ଡ ନୁଆଇଁ ସମ୍ମାନ ଜଣାଇଲେ ଓ ବାଦ୍ୟବାଦକମାନଙ୍କୁ ତାଙ୍କର ଯନ୍ତ୍ରଗୁଡ଼ିକୁ ସଜାଡ଼ିବାକୁ କହିଲେ । ଏହି ବାଦକମାନଙ୍କୁ ସେ ବାନ୍ଧବଗଡ଼ରୁ ନିଜ ସଂଗେ ଆଣିଥିଲେ । ତାନପୁରାର ଲହର ଓ ମୃଦଙ୍ଗର ତାଳ ସଂଗରେ ତାଙ୍କର କଣ୍ଠସ୍ୱର ଝଙ୍କୃତ ହୋଇ ଉଠିଲା । ବାଦଶାହ ଓ ସଭାସଦ୍‌ମାନେ ତନ୍ମୟ ହୋଇଗଲେ । ତିନି ଘଣ୍ଟା ସମସ୍ତେ ମନ୍ତ୍ରମୁଗ୍ଧ ହୋଇ ଶୁଣିଲେ—ସମୟର ଜ୍ଞାନ ନଥିଲା କାହାର । ଗାୟନର ସମାପ୍ତି ପରେ ସମସ୍ତେ ପ୍ରଶଂସାରେ ଶତମୁଖ ହୋଇ ଉଠିଲେ । ବାଦଶାହ ତାଙ୍କ ଆସନରୁ ଧୀରେ ଧୀରେ ଉଠିଲେ ଓ କହିଲେ, ଆଜିଠାରୁ ମିଆଁ ତାନସେନ୍ ମୋ ଦରବାରରେ ନବରତ୍ନ ମଧ୍ୟରେ ଗଣାଯିବେ । ତାନସେନ୍‌ଙ୍କର ଅପୂର୍ବ ଗାୟନ ପାଇଁ ତାଙ୍କୁ ଏକ ନିର୍ଦ୍ଦିଷ୍ଟ ପ୍ରୋତ୍ସାହନ ରାଶି ସମର୍ପଣ କରାଯିବ ।

ଏହା ପରେ ପରେ ଆକବର ଚିତୋର ଗଡ଼ ବିଜୟ କଲେ । ରାଜପୁତମାନଙ୍କ ବିପକ୍ଷରେ ଏହା ଏକ ବିରାଟ ବିଜୟ ଥିଲା । ମୋଗଲ ଦରବାରରେ ଏହି ବିଜୟ ବହୁତ ଆନନ୍ଦ ଉଲ୍ଲାସରେ ପାଳିତ ହେଲା । ବାଦଶାହ ଏହି ବିଜୟକୁ ସଂପୂର୍ଣ୍ଣ ଗ୍ରହଣ କରିପାରୁ ନଥାନ୍ତି । ହଳଦୀଘାଟି ଯୁଦ୍ଧର ବିଭୀଷିକା ତାଙ୍କ ଆଖି ଆଗରେ ନାଚୁଥାଏ । ନାରୀମାନଙ୍କ ଆତ୍ମଦାହ, ଚିତୋର ଦୁର୍ଗ ପଛରୁ ଧୂଆଁ, ଅଧାପୋଡ଼ା ମାଂସର ଗନ୍ଧ, ରାଜପୁତ ବୀରମାନଙ୍କର ଯୁଦ୍ଧରେ କ୍ଷତାକ୍ତ ହୋଇ ବିକଳ ଚିତ୍କାର ଓ ତା'ପରେ ମୃତ୍ୟୁକୁ ଆଲିଙ୍ଗନ—ଏସବୁ ତାଙ୍କୁ ବ୍ୟସ୍ତ, ବିବ୍ରତ ଓ ବ୍ୟଥିତ କରୁଥାଏ । ହୃଦୟରେ ଗୋଟିଏ ଶୂନ୍ୟତା ଅନୁଭବ କରୁଥାନ୍ତି । କାହା ସଂଗରେ ଏଇ ଶୂନ୍ୟତାକୁ

ବାଣ୍ଟିବେ, କାହା ସଂଗେ ଏଇ ଦୁଃଖକୁ ଭାଗ କରିବେ। ଏସବୁ ନେଇ ବଡ଼ ଏକାନ୍ତ ଅନୁଭବ କରୁଥାନ୍ତି। ରାଜ-ବିଦୁଷକଙ୍କ ପରିହାସ, ମଦିରା, ଅଫିମ ବା ସୁନ୍ଦରୀ ରମଣୀ—କେହି ତାଙ୍କ ଦୁଃଖୀ ଆତ୍ମାକୁ ସାନ୍ତ୍ୱନା ଦେଇପାରୁ ନଥାଏ।

ହଠାତ୍ ତାଙ୍କର ତାନସେନ୍‌ଙ୍କ କଥା ସ୍ମରଣ ହେଲା। ତାଙ୍କର ବନ୍ଧୁ ମିଆଁ ତାନସେନ୍—ଏହି ବ୍ୟକ୍ତି ହିଁ ତାଙ୍କର ହୃଦୟର ଏହି ଅନ୍ଧକାରକୁ ଦୂର କରିପାରିବେ। ସେ ତତ୍‌କ୍ଷଣାତ୍ ତାଙ୍କୁ ଡକାଇ ପଠାଇଲେ।

ସଂଧ୍ୟା ହୋଇ ଆସୁଥିଲା। ବାଦଶାହ ତକିଆକୁ ଆଉଜି ତାଙ୍କ ବ୍ୟକ୍ତିଗତ କୋଠରୀରେ ବସି କ୍ରମବର୍ଦ୍ଧିଷ୍ଣୁ ଅନ୍ଧକାରକୁ ଦେଖୁଥାନ୍ତି। ଏତିକି ବେଳେ ତାନସେନ୍ ପହଞ୍ଚିଲେ। ତାଙ୍କୁ ଦେଖି ଆକବର କହିଲେ, "ମିଆଁ ତାନସେନ୍! ତୁମେ ଆସିଗଲ? ମୋ ହୃଦୟରେ ଦାରୁଣ ବ୍ୟଥା—କୌଣସି ଜିନିଷ ଏହାକୁ ଦୂର କରି ପାରୁନାହିଁ। ଆଖି ଆଗରେ ଓ ହୃଦୟରେ ଅନ୍ଧକାର ଭରିରହିଛି। ମୁଁ ଶୁଣିଛି ଦୀପକ ରାଗର ଅନ୍ଧକାର ଦୂର କରିବାର କ୍ଷମତା ଅଛି। ତୁମେ ଏ କଠିଣ ରାଗକୁ ସାଧନ କରିଛ; ତୁମେ ଏହାକୁ ଗାୟନ କରି ମୋ ହୃଦୟର ଅନ୍ଧକାରକୁ ଦୂର କରିପାରିବ? ମୁଁ ଆଜି ରାଜମହଲରେ ଆଲୋକ ନ ଜଳାଇବାର ଆଦେଶ ଦେଇଅଛି। ତୁମର ମଧୁର ସଂଗୀତ ମୋ ମହଲରୁ ଉଦ୍‌ବୃତ୍ତ ହୋଇ ମୋର ପୃଥିବୀକୁ ଆଲୋକିତ କରୁ। ଏପର୍ଯ୍ୟନ୍ତ ଦୁଃଖ ଓ ପରିତାପରେ ତାହା ଭାରାକ୍ରାନ୍ତ ହୋଇ ରହିଅଛି।"

ତାନସେନ୍ ସ୍ତବ୍ଧ ହୋଇ ରହିଗଲେ। ଦୀପକ ରାଗ ଗାୟନର କି ଭୟଙ୍କର ପରିଣାମ ହୋଇପାରେ, ତାହା ଚିନ୍ତା କରି ତାଙ୍କ ମନ କମ୍ପି ଉଠିଲା। କିନ୍ତୁ ରାଜ ଆଦେଶକୁ ଅବଜ୍ଞା କରିବାର ତାଙ୍କର କ୍ଷମତା ନଥିଲା।

ତାନସେନ୍ ମା' ସରସ୍ୱତୀ ଓ ତାଙ୍କ ଗୁରୁ ସ୍ୱାମୀ ହରିଦାସଙ୍କୁ ସ୍ମରଣ କଲେ। ତା'ପରେ ସେ ଅଗ୍ନିଙ୍କୁ ଆବାହନ କଲେ ମନ୍ତ୍ର ଜପ କରି। ତା'ପରେ ଦୀପକ ରାଗରେ ଗାଇବା ଆରମ୍ଭ କଲେ **"ନିଶିଦିନ ସୁଲଗତ .... ।"**

ମୃଦଙ୍ଗ ନିନାଦ ସହିତ ଓଁକାର ଧ୍ୱନି ବାରମ୍ବାର ଗୁଂଜରିତ ହେଲା। ତାନସେନ୍ ମୁଦ୍ରିତ ନୟନରେ 'ଓମ୍'ର ତାନରେ ବୁଡ଼ି ଯାଇଥିଲେ। ହଠାତ୍ ବିଜୁଳି ପରି ଝଲକରେ ଝଲସି ଉଠିଲା ରାଜମହଲ। ପ୍ରତ୍ୟକ ଦୀପ ଓ ଝାଡ଼ଦୀପ ଜଳି ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର ହେଲେ। ଆକବର ସ୍ତମ୍ଭୀଭୂତ ହୋଇଗଲେ। ସେ କହିଲେ, "ଏପର୍ଯ୍ୟନ୍ତ ମୁଁ ଦୀପକ ରାଗର ଅଲୌକିକ

ଗୁଣ କେବଳ ଶୁଣିଥିଲି, କିନ୍ତୁ ଆଜି ସ୍ୱୟଂ ପ୍ରତ୍ୟକ୍ଷ କଲି । ମୁଁ ଆପଣଙ୍କୁ କିପରି ସମ୍ମାନ କରିପାରିବି? ମହାନ ସଂଗୀତଜ୍ଞ ତାନସେନଙ୍କ ସଂଗୀତକୁ ମୁଦ୍ରାରେ ଆକଳନ କରିବା ସମ୍ଭବ ନୁହେଁ । ତଥାପି ମୁଁ ଆପଣଙ୍କୁ ଦୁଇଲକ୍ଷ ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ଦେଉଛି ।''

ଅନୁକୂଳ ପରିସ୍ଥିତି ନଥାଇ ଦୀପକରାଗ ଗାଇବାର ପରିଣାମ ଭୟଙ୍କର । ତାନସେନ୍‌ଙ୍କ ଶରୀର ଅଗ୍ନିରେ ଜଳିବା ପରି ବୋଧ ହେଲା । ମେଘମଲ୍ଲାର ରାଗର ଗାୟନ କେବଳ ତାଙ୍କ ଶରୀରକୁ ଶୀତଳ କରି ପାରିବ । କିନ୍ତୁ ଏହାକୁ ଅନ୍ୟଠାରୁ ଶୁଣିଲେ ହିଁ ତାଙ୍କୁ ଶୀତଳତା ମିଳିବ । ତାନସେନ୍ ଆକବରଙ୍କୁ ତାଙ୍କ ଶାରୀରିକ ଅବସ୍ଥା ବିଷୟରେ କହିଲେ । ବାଦଶାହଙ୍କ ଅନୁମତି ନେଇ ସୌରାଷ୍ଟ୍ର ଯାଇ ସୋମନାଥ ଦର୍ଶନ କରିବାକୁ ବାହାରିଗଲେ । ଯିବା ବାଟରେ ବଡ଼ନଗର ହାଟକେଶ୍ୱର ମନ୍ଦିରରେ କିଛି ଦିନ ରହିବାକୁ ମନସ୍ଥ କଲେ । ନିଜ ଗାଁ ଅଂଚଳକୁ ଆସିବାରୁ ତାଙ୍କୁ ମାନସିକ ଶାନ୍ତି ମିଳିଲା । ଦୁର୍ଭାଗ୍ୟକୁ ବଡ଼ନଗରରେ ସେଇ ସମୟରେ ଅନାବୃଷ୍ଟି ପଡ଼ିଥିଲା । ଚତୁର୍ଦ୍ଦିଗରେ ଜଳର ଘୋର ଅଭାବ ଓ ଜନସମାଜ ପ୍ରଚଣ୍ଡ ଗ୍ରୀଷ୍ମରେ କଷ୍ଟ ପାଉଥାନ୍ତି । ବଡ଼ନଗରର ସ୍ତ୍ରୀଲୋକମାନେ ଶିବଙ୍କ ସମ୍ମୁଖରେ ଭଜନ କୀର୍ତ୍ତନ ଗାନ କରି ପ୍ରାର୍ଥନା କରୁଥାନ୍ତି ବର୍ଷାର ଆଗମନ ପାଇଁ । ହଠାତ୍ ତାନସେନ୍‌ଙ୍କ ଶରୀରର ଜ୍ୱଳନ କମିବାକୁ ଲାଗିଲା । ମେଘମଲ୍ଲାରରେ ସେ ଶୁଣିବାକୁ ପାଇଲେ ତାଙ୍କ ନିଜ ରଚନାର ଶବ୍ଦ–**''ନାଚତି ଚପଳ ଚଂଚଳ ଗତି ....।''**

ସ୍ୱରରେ ଅପୂର୍ବ ମାଧୁର୍ଯ୍ୟ ଥିଲା । କର୍ଣ୍ଣକୁ ଅମୃତ ବର୍ଷା ହେବା ପରି ବୋଧ ହେଲା, ଶରୀରର ଜ୍ୱାଳା ଦୂର ହୋଇଗଲା । ବୀଣା, ମୃଦଙ୍ଗ ଓ ସ୍ୱରର ଦୁନିଆରେ ସେ ଆତ୍ମବିସ୍ମୃତ ହୋଇଗଲେ । କିଛି ସମୟ ପରେ ଆକାଶରେ ମେଘ ଉଠାଇ ଜୋର୍‌ରେ ବର୍ଷା ହେବାକୁ ଲାଗିଲା । ତାନସେନ୍‌ଙ୍କ ଶରୀର ଓ ମନ ସ୍ନିଗ୍ଧ ହୋଇଗଲା । ଶୁଖିଲା ପୋଖରୀ ଜଳପୂର୍ଣ୍ଣ ହେବାକୁ ଲାଗିଲା । ପୃଥିବୀର ତୃଷ୍ଣା ମେଣ୍ଟିଲା । ଜନତା ମଧ୍ୟରେ ଆନନ୍ଦ ଉଲ୍ଲାସ ଭରିଗଲା ।

ତାନସେନ୍ ସେଇ ରାତି ହାଟକେଶ୍ୱର ମନ୍ଦିରରେ କଟାଇଲେ । ସେ ପୂଜକଙ୍କୁ ପଚାରିଲେ– ଏ ସ୍ତ୍ରୀ ଲୋକମାନେ କିଏ, ଯେ ମେଘମଲ୍ଲାରକୁ ତା'ର ପ୍ରକୃତ ରାଗିଣୀରେ ଗାଇ ପାରିଲେ । ପୂଜକ କହିଲେ– ସେମାନେ

ସ୍ଥାନୀୟ ଜମିଦାର ନୀଳକଣ୍ଠ ରାୟଙ୍କ ବୋହୂ ତଥା ପରମଭକ୍ତ ନରସିଂହ ମେହେଟ୍ଟାଙ୍କ ଅଣନାତୁଣୀ । ସେମାନଙ୍କ ନାଁ ତାନା ଓ ରୀରୀ ।

ହାଟକେଶ୍ୱର ମନ୍ଦିରରେ ତାନସେନ୍ ରହିଥିବା ଖବର ଗ୍ରାମସାରା ବ୍ୟାପିଗଲା । ନୀଳକଣ୍ଠ ରାୟ ନିଜେ ଆସି ତାନସେନ୍‌ଙ୍କୁ ସାକ୍ଷାତ୍ କଲେ । ବାର୍ତ୍ତାଳାପରୁ ଜଣା ପଡ଼ିଲା ଯେ ସେ ମଧ୍ୟ ଜଣେ ସଂଗୀତପ୍ରେମୀ ଓ ତାଙ୍କର ଜଣେ ଗୁରୁଭାଇ । ଜମିଦାର ଭଜନ-କୀର୍ତ୍ତନର ଏକ ସମାରୋହ ଆୟୋଜନ କଲେ । ତାନସେନ୍ ଏଇ ସମାରୋହରେ ଆନନ୍ଦରେ ଯୋଗଦାନ କଲେ । ତାନା ଓ ରୀରୀଙ୍କ ଗାୟନ ସରିବା ପରେ ସେ ନିଜେ ହାଟକେଶ୍ୱରଙ୍କ ଉପରେ ଗୋଟିଏ ସ୍ୱରଚିତ ଜଣାଣ ଗାଇଲେ । ସଂଗୀତର ମାଧୁର୍ଯ୍ୟରେ ଭକ୍ତମାନେ ବିଭୋର ହୋଇଗଲେ ।

ତାନସେନ୍ ଆଗ୍ରା ଫେରି ଆସିଲେ । ଏଇ ଘଟଣାର ଚର୍ଚ୍ଚା ସେ କାହା ସଙ୍ଗେ କରି ନଥିଲେ । ସେ ଜାଣିଥିଲେ ଯେ ତାନା ଓ ରୀରୀଙ୍କ ସୌନ୍ଦର୍ଯ୍ୟ ଓ କଳାନୈପୁଣ୍ୟ ଆଗ୍ରାରେ ଜଣାପଡ଼ିଲେ ବିଷମ ପରିସ୍ଥିତି ଉତ୍ପନ୍ନ ହେବ; କିନ୍ତୁ ତାଙ୍କ ପହଂଚିବା ପୂର୍ବରୁ ଆକବରଙ୍କୁ ସମସ୍ତ ଖବର ମିଳିଯାଇଥିଲା । ନୀଳକଣ୍ଠରାୟଙ୍କ କୌଣସି ଶତ୍ରୁ ତାନା ଓ ରୀରୀଙ୍କ ଗାୟନ କଳା ଓ ତାଙ୍କର ସୌନ୍ଦର୍ଯ୍ୟର ପ୍ରଶଂସା କରି ବାଦଶାହଙ୍କୁ ଜଣାଇ ଦେଇଥିଲା । ଯୁବକ ମହାରାଜା ଏପରି ସୁଯୋଗ ସର୍ବଦା ଖୋଜୁଥାନ୍ତି । ଅତିଶୀଘ୍ର ଜଣେ ବରିଷ୍ଠ ସରଦାରଙ୍କୁ ବଡ଼ନଗର ପଠାଗଲା ଏବଂ ଯେପରି ହେଉ ଦୁଇଭଉଣୀଙ୍କୁ ହାଜର ହେବାକୁ ହୁକୁମ କରାଗଲା । ବଡ଼ନଗର ପହଞ୍ଚି ସରଦାର ରାଜାଙ୍କ ଆଦେଶ ଶୁଣାଇଲେ । ଚତୁର୍ଦ୍ଦିଗରେ ହାହାକାର ପଡ଼ିଗଲା । ତାନା ଓ ରୀରୀ ଅବସ୍ଥାକୁ ବୁଝିପାରିଥିଲେ । ରାଜାଙ୍କର ମେଘମହ୍ଲାର ଶୁଣିବା ସଂଗେ ସଂଗେ ଅନ୍ୟ ମନ୍ଦ ଉଦ୍ଦେଶ୍ୟ ଥିବା ସେମାନେ ଜାଣି ପାରିଥିଲେ ।

ଗାଁର ମୁଖିଆ ଓ ବୟସ୍କ ଲୋକମାନଙ୍କର ସଭା ବସିଲା । ଆକବରଙ୍କ ବିରୁଦ୍ଧରେ ଯୁଦ୍ଧ କରିବାର ପ୍ରଶ୍ନ ନଥିଲା । ରାଜାଙ୍କ ଆଦେଶ ଅମାନ୍ୟ କଲେ ସମଗ୍ର ଗ୍ରାମଟିକୁ ଧୂଳିରେ ମିଶାଇ ଦେଇ ପାରନ୍ତି । ସମସ୍ତେ ବିଶେଷ ଚିନ୍ତିତ ହୋଇ ପଡ଼ିଲେ ।

ତାନା ଓ ରୀରୀ ଗୁରୁଜନମାନଙ୍କୁ ବିଶ୍ୱାସ ଦେଲେ କି ସେମାନଙ୍କୁ ଆଗ୍ରା ପଠାଯାଉ, କୁଳ ମର୍ଯ୍ୟାଦା ଓ ସତୀତ୍ୱକୁ ସେମାନେ ଅକ୍ଷୁଣ୍ଣ ରଖିବେ ।

ଭଗବାନ ହାଟକେଶ୍ୱର ସେମାନଙ୍କୁ ରକ୍ଷା କରିବେ।

ଦୀବାନ-ଏ-ଖାସ୍‌ରେ ନବରତ୍ନ ମଣ୍ଡଳୀ ଓ କେତେକ ବିଶିଷ୍ଟ ଦରବାରୀଙ୍କ ଆଗରେ ତାନା ଓ ରୀରୀଙ୍କ ସଂଗୀତ କାର୍ଯ୍ୟକ୍ରମର ବନ୍ଦୋବସ୍ତ ହେଲା। ତାନସେନ୍‌ଙ୍କ ଅନୁରୋଧରେ ତାନା ଓ ରୀରୀ ବେଗମ (ରାଣୀ) ଓ ଶାହାଜାଦୀଙ୍କ ଗହଣରେ ପର୍ଦା ପଛରେ ବସିଲେ। ବାଦଶାହ ମେଘମଲ୍ଲାର ଗାୟନର ଆଦେଶ ଦେଲେ ଓ ହସି ହସି କହିଲେ–ଏ କାର୍ତ୍ତିକ ମାସରେ ବର୍ଷା ସମ୍ଭବ ହେବ କି ନାହିଁ ଦେଖିବା।

ବାଦକମାନେ ତାଙ୍କର ବିଭିନ୍ନ ବାଦ୍ୟର ସୁର ଠିକ୍ କଲେ। ପର୍ଦାପଛରୁ ଉଦାସ ଭରା ସ୍ୱର ଲହରୀ ଭାସି ଆସିଲା। ଏପରି ଲାଗୁଥିଲା ଯେପରି ଜୀବନର ସବୁ ରସ ଶତଧାର ହୋଇ ଚତୁର୍ଦ୍ଦିଗରେ ବ୍ୟାପି ଯାଉଛି। ବର୍ଷା



କେତେବେଳେ ଆରମ୍ଭ ହେଲା ଏହାର ଆଭାସ କାହାକୁ ହୋଇ ନଥିଲା। ସ୍ୱର ଲହରୀ ବନ୍ଦ ହୋଇଗଲା। ପର୍ଦା ପଛ ମଣ୍ଡପରେ ପାଣି ବଢ଼ି ବଢ଼ି ଗ୍ଲିଲା। ବେଗମ ଓ ଶାହଜାଦୀମାନେ ଉଠି ନିଜ ନିଜ ମହଲକୁ ଯିବାକୁ ଲାଗିଲେ। ହଠାତ୍ ସମସ୍ତେ ଦେଖିଲେ ଯେ ତାନା ଓ ରୀରୀଙ୍କ ଶରୀର ରକ୍ତରଞ୍ଜିତ ହୋଇ ପଡ଼ିଛି। ସେମାନେ ପରସ୍ପରର ହାତ ଧରି ଚିରନିଦ୍ରାରେ ଶାନ୍ତଭାବରେ ଶୋଇଯାଇଛନ୍ତି। ସେମାନଙ୍କ ନିକଟରେ ଦୁଇଟି କଟୁରୀ ପଡ଼ିଛି।



# ରାଜସନ୍ନ୍ୟାସୀ ଦୁର୍ଗାଦାସ

ରାଠୋର ଦୁର୍ଗାଦାସ ଯୁବକ ସମୟରେ ସୁନ୍ଦର ଓ ସ୍ୱାସ୍ଥ୍ୟବାନ ଥିଲେ । କେତେ ବର୍ଷ ସେ ଔରଙ୍ଗଜେବଙ୍କ ଦରବାରରେ ଥିଲେ । ବାଦଶାହଙ୍କର ପ୍ରିୟ ଉଦୟପୁରୀ ବେଗମ୍ ତାଙ୍କୁ କେତେ ଥର ଦରବାରରେ ଦେଖିଥିଲେ । ମନେ ମନେ ତାଙ୍କୁ ଭଲପାଇ ବସିଥିଲେ । କେତେ ବର୍ଷ ପରେ ଏକ ମଉକା ମିଳିଲା ।

ବାଗୀ ଶାହଜାଦା ଆକବରଙ୍କୁ ନେଇ ଦୁର୍ଗାଦାସ ଯେତେବେଳେ ପୁନାର ଶମ୍ଭାଜୀଙ୍କ ନିକଟକୁ ଗଲେ, ସେଠାରେ କିଛିଦିନ ରହି ଯାଇଥିଲେ । ବାରମ୍ବାର ଯୁଦ୍ଧ କରି ଥକିଯାଇଥିବାରୁ ବିଶ୍ରାମ କରୁଥିଲେ ।

ଯେଉଁଦିନ ସେ ମାରୱାଡ ଫେରୁଥିଲେ, ତାର ପୂର୍ବ ଦିନ ରାତିରେ ଜଣେ ସ୍ତ୍ରୀଲୋକର ଚିତ୍କାର ତାଙ୍କର କାନରେ ପଡ଼ିଲା । ସେ ତରବାରୀ ଧରି ବାହାରକୁ ଆସି ଦେଖିଲେ ଶମ୍ଭାଜୀ ମଦ ନିଶାରେ ଗୋଟିଏ ବାଳିକାକୁ ଉଲଗ୍ନ କରୁଛନ୍ତି । ସେ ବାଳିକାଟି ଚିତ୍କାର କରୁଛି ।

''ଶମ୍ଭାଜୀ! ତୁମେ ଏପରି ଶିବାଜୀ ମହାରାଜଙ୍କର ପବିତ୍ର ନାମରେ କାଳିମା ଲଗାଇବାକୁ ଯାଉଛ । ତୁମକୁ ଲଜ୍ଜା ନାହିଁ ।'' ଦୁଇଜଣଙ୍କ ମଧ୍ୟରେ ଯୁକ୍ତିତର୍କ ହୋଇ ଝଗଡ଼ା ଆରମ୍ଭ ହୋଇଗଲା । ଯୁବକ ଶମ୍ଭାଜୀଙ୍କୁ ଦୁର୍ଗାଦାସ ବହେ ଛେଚିଲେ, ମାତ୍ର ଜୀବନରୁ ମାରିଦେଲେ ନାହିଁ । ତାଙ୍କୁ ଚେତାବନୀ ଦେଇ ଛାଡ଼ିଦେଲେ । ଏହି ଦୁହିଙ୍କର କଳି ତକରାଳ ଶୁଣି ସିପାହୀମାନେ ଆସିଗଲେ ଏବଂ ଶମ୍ଭାଜୀଙ୍କର ହୁକୁମରେ ଦୁର୍ଗାଦାସକୁ ଜେଲଖାନାକୁ ନେଲେ ।

ପରଦିନ ଦୁର୍ଗାଦାସଙ୍କୁ ହାତକଡ଼ି ଦେଇ ଦିଲ୍ଲୀ ନେବା ବେଳେ ସେ ଶାପ ଦେଲା ଯେ ଯଦି ମୁଁ କାୟମନୋବାକ୍ୟରେ କୌଣସି ପାପ କର୍ମରେ ଲିପ୍ତ ହୋଇ ନଥିବି, ତେବେ ତୁମର ଔରଙ୍ଗଜେବ ହାତରେ ମୃତ୍ୟୁ ହେବ ।

ଦିଲ୍ଲୀର ଲାଲକିଲ୍ଲାରେ ହାତକଡ଼ି ଏବଂ ବେଡ଼ି ପକାଇ ଦୁର୍ଗାଦାସଙ୍କୁ ବାଦଶାହଙ୍କର ସାମନାରେ ହାଜର କରାଗଲା । ଔରଙ୍ଗଜେବ କ୍ରୋଧିତ ହେଲେ ମଧ୍ୟ ଦୁର୍ଗାଦାସଙ୍କର ପ୍ରଭୁଭକ୍ତି ଏବଂ ବାହାଦୁରୀ ନିମିତ୍ତ ତା' ଉପରେ ସନ୍ତୁଷ୍ଟ ଥିଲେ ।

ତେବେ ବାଦଶାହ କହିଲେ, ''ତୁମେ ଆମ ଶାସନ ବିରୁଦ୍ଧ କାମ

କରିଛ; ଲୁଟପାଟ ଓ ଅଗ୍ନିକାଣ୍ଡ କରିଛ, ଶାହାଜାଦା ଆକବରକୁ ବାଗୀ କରିବାକୁ ଚେଷ୍ଟା କରିଛ । ଏଥିପାଇଁ ତୁମକୁ କି ପ୍ରକାର ଶାସ୍ତି ଦିଆଯିବ?''

ଦୁର୍ଗାଦାସ କହିଲେ, ''ବାଦଶାହ ସଲାମତ! ମୁଁ ଯାହା କରିଛି, ନିଜର ମହାରାଜ ଏବଂ ତାଙ୍କର ସମ୍ମାନ ନିମିତ୍ତ କରିଛି । ଆପଣଙ୍କର ସେନାପତି ହିନ୍ଦୁମାନଙ୍କୁ ମୁସଲମାନ କରୁଛି, ମନ୍ଦିର ଭାଙ୍ଗୁଛି, ମା-ଭଉଣୀଙ୍କର ଇଜ୍ଜତ ନେଉଛି ।''

ଦୁର୍ଗାଦାସଙ୍କୁ ଗୋଟିଏ କୋଠରୀରେ ବନ୍ଦ କରିଦେବା ଲାଗି ପହରାଦାରମାନଙ୍କୁ ହୁକୁମ୍ ହେଲା ।

ବାଦଶାହ ମହଲ ମଧ୍ୟରେ ପ୍ରବେଶ କଲାପରେ ତାଙ୍କର ନାତୁଣୀ (ଆକବରଙ୍କର ଝିଅ) କହିଲା, ''ଦାଦାଜାନ୍, ଏ କଣ୍ଠସ୍ୱର ତ ମୋର ବାବାଙ୍କ ସ୍ୱର ପରି ଥିଲା! ସେ କଣ ଏଠାକୁ ଆସିଛନ୍ତି?''

''ମା! ତୋର ସାମନାରେ ତ ଦୁର୍ଗାଦାସ ଥିଲା । ତୁ ତାକୁ ଦଶବର୍ଷ ହେଲା ଦେଖିଆସିଛୁ । ତେଣୁ ତାକୁ କଣ ଚିହ୍ନି ପାରିଲୁ ନାହିଁ?''

ନାତୁଣୀ କହିଲା–''ନାଁ-ନାଁ ଦାଦାହଜୁର, ସେ ସବୁବେଳେ ମୋତେ ପରଦା (ବୁର୍ଖା) ରେ ରଖୁଥିଲେ । କୋରାନ ପଢ଼ାଇବାକୁ ମୁସଲମାନ ଆଲିମ୍‌କୁ ରଖିଥିଲେ । କେତେବେଳେ କିଛି କହିବା ଦରକାର ପଡ଼ିଲେ ତାଙ୍କ ମାଧ୍ୟମରେ କଥା ହେଉଥିଲେ ।''

ଔରଙ୍ଗଜେବ ଆଶ୍ଚର୍ଯ୍ୟ ହୋଇ ଭାବିଲେ, ଏପରି ସୁନ୍ଦରୀ ଯୁବତୀକୁ ନିକଟରେ ରଖି ମଧ୍ୟ ସେ କିପରି ସଂଯତ ରହିଥିଲା! ତାର ଧର୍ମ ପରିବର୍ତ୍ତନ କରିବାକୁ ବି ଚେଷ୍ଟା କଲା ନାହିଁ । ମୁଁ ତ ତାର ଗ୍ରାମ ପୋଡ଼ି ଧ୍ୱଂସ କରିଦେଇଛି । ସେଠାରେ କେତେ କେତେ ମନ୍ଦିର ଭାଙ୍ଗିଦେଇଛି । ମାତ୍ର ସେ ତା ପାଖରେ ଏପରି ଯୁବତୀ ପାଇ କୋରାନ ପଢ଼ାଇଛି, ଅଦ୍ଭୁତ ଧରଣର ଯୁବକ ଏହି ଦୁର୍ଗାଦାସ! ହେଲେ ମଧ୍ୟ ଔରଙ୍ଗଜେବଙ୍କର କ୍ରୂରତା ଅପସରି ଗଲା ନାହିଁ । କେବଳ ମାରୱାଡ଼ରେ ନୁହେଁ, ସାରା ରାଜସ୍ଥାନରେ ଦୁର୍ଗାଦାସଙ୍କର ସୁନାମ ଥିଲା । ମାତ୍ର ସେ ଏବେ ଜେଲରେ । ତେଣୁ ଏହି ମୌକାରେ ନିଜର ସରଦାରଙ୍କ ସଙ୍ଗେ ମିଶି ତାଙ୍କୁ ହତ୍ୟା କରିବାର ଗୁପ୍ତ ଯୋଜନା କଲେ ।

ଘଟଣା ଚକ୍ରରେ ଉଦୟପୁରୀ ବେଗମ୍ ପରଦା ପଛରେ ଠିଆ ହୋଇ ସମସ୍ତ ଶୁଣୁଥିଲେ । ସେ ଭାବିଲେ, ଦିନେ ଦୁଇଦିନ ମଧ୍ୟରେ ଦୁର୍ଗାଦାସଙ୍କୁ

ଫାଶୀ ଦିଆଯିବ, ତେଣୁ ତାଙ୍କୁ ଆଜି ରାତିରେ ଯାଇ ଦେଖି ଆସିବି । ଅତି ସତର୍କରେ ରାତି ଅଧରେ ଦୁର୍ଗାଦାସ ଯେଉଁଠାରେ ବନ୍ଦୀ ଥିଲା ସେଠାକୁ ଗଲେ । ଯୋଗକୁ ଔରଙ୍ଗଜେବଙ୍କର ନିଦ ଭାଙ୍ଗିଗଲା । ସେ ସନ୍ଦେହ କରି ଲୁଚି ଲୁଚି ବେଗମଙ୍କ ପଛରେ ଗଲେ ।

ବେଗମ ଜେଲଖାନାର ଫାଟକ ନିକଟରେ ପହଞ୍ଚି ପହରାଦାରକୁ ଚାବି ମାଗିଲେ ଏବଂ ଫାଟକ ଖୋଲି ଭିତରକୁ ଗଲେ । ଦୁର୍ଗାଦାସଙ୍କୁ ଜଣାଥିଲା ଦିନେ ଦୁଇ ଦିନରେ ତାଙ୍କୁ ଫାଶୀ ହେବ । ତାଙ୍କୁ କିଶୋର ଅଜିତ୍ ସିଂହଙ୍କୁ ଯୋଧପୁରର ରାଜ୍ୟଭାର ଅର୍ପଣ କରିବାର ଚିନ୍ତା ଥିଲା । ସତର ବର୍ଷ ଧରି ସେଠାରେ ମୁସଲମାନମାନଙ୍କର ଆଧିପତ୍ୟ ଥିବାରୁ ସେଠାରେ ଲୋକମାନେ ତ୍ରାହି ତ୍ରାହି କରୁଥିଲେ । ହିନ୍ଦୁମାନଙ୍କ ଉପରେ ଜିଜିଆ କର ବସିଥିଲା, ଅନେକ ରାଜପୁତ ମୁସଲମାନ ହୋଇଯାଇଥିଲେ । ବେଗମ ପାଟି କରି ଡାକିଲେ–"ଦୁର୍ଗାଦାସ! ତୁମେ ଚେଇଁଛ ତ? ଦୁର୍ଗାଦାସ କହିଲେ–"ମଲିକା-ଏ-ଆଲମ! ଯିଏ ଶୀଘ୍ର ଫାଶୀଖୁଣ୍ଟରେ ଝୁଲିବ, ତାକୁ ନିଦ କିପରି ହେବ? ମାତ୍ର ଆପଣ ଏଠାରେ ଜେଲଖାନାରେ!" ବେଗମ କହିଲେ, "ମୁଁ ତୁମକୁ



ଏଠାରୁ ନେଇଯିବାକୁ ଆସିଛି । ତୁମେ ଯଦି ଚାହିଁବ, ଏହି ମୁହୂର୍ତ୍ତରେ ଆମେ ଦୁହେଁ ଏଠାରୁ ପଳାଇଯିବା । ବାଦଶାହଙ୍କୁ ଡରିବାର କିଛି କାରଣ ନାହିଁ ।

ସେ ଯାହାହେଲେ ବି ମୋ ଦ୍ୱାରା ବଶୀଭୂତ। ମୁଁ ତୁମକୁ ଅନ୍ତରର ସହିତ ଭଲ ପାଏ। ପନ୍ଦର ବର୍ଷ ତଳେ ତୁମକୁ ଦେଖିଥିଲି। ପ୍ରଥମ ଦେଖାରୁ ମୋର ମନ ମଧ୍ୟରେ ତୁମ ସହିତ ମିଳନର ଇଚ୍ଛା ଥିଲା।''

ଦୁର୍ଗାଦାସ କହିଲେ–''ମଲିକା! ମୋର ପତ୍ନୀ ଅଛି, ପୁତ୍ର ଓ ପରିବାରବର୍ଗ ମଧ୍ୟ ଅଛନ୍ତି। ଆପଣ ମୋର ସାନଭଉଣୀ ଅଥବା ଝିଅ ପରି। ତେଣୁ ଏପରି କଥା କହନ୍ତୁ ନାହିଁ।''

ବେଗମ କହିଲେ, ''ଆପଣ ଜଣେ ଅଜବ ଲୋକ! ଏଇଥିପାଇଁ ତ ଶତ୍ରୁର ନାତୁଣୀ ଶାହଜାଦୀ ଆପଣଙ୍କ ଗ୍ରାମରେ ଏତେ ବର୍ଷ ରହି ସୁଦ୍ଧା ସୁରକ୍ଷିତ ଚାଲିଆସିଲା, ତାର ସତୀତ୍ୱ ଉପରେ ଆଞ୍ଚ ଆସିଲା ନାହିଁ। ଏବେ ତୁମକୁ ମୃତ୍ୟୁମୁଖରୁ ରକ୍ଷା ପାଇବା ପାଇଁ ଅବକାଶ ମିଳିଥିଲେ ମଧ୍ୟ ତୁମେ କୁକୁର ପରି ମରିବାକୁ ଚାହୁଁଛ କିପରି?''

–''ଦୁର୍ଗାଦାସର ପରସ୍ତ୍ରୀ ପ୍ରତି ମା-ଭଉଣୀ ଏବଂ ଝିଅ ବ୍ୟତୀତ ଅନ୍ୟ କିଛି ଭାବନା ନଥାଏ। ଦିନେ ନା ଦିନେ ତ ମରିବି। କାଲି ମରେ ବା ଦଶ କୋଡ଼ିଏ ବର୍ଷପରେ। ମରିବାଟା ତ ନିଶ୍ଚିତ।''

ଔରଙ୍ଗଜେବ ସମସ୍ତ ଘଟଣା ବିଷୟରେ ଅବଗତ ହୋଇଗଲେ। ତାଙ୍କ ମନରେ ବେଗମ ଓ ତାର ପୁତ୍ର ପ୍ରତି ଅତ୍ୟନ୍ତ ସ୍ନେହ ମମତା ଥିଲା। ହେଲେ ମଧ୍ୟ ଏପରି ଘଟଣାରେ ଦଣ୍ଡ ଦେବାଟା ଜରୁରୀ ହୋଇ ପଡ଼ିଲା।

କିନ୍ତୁ ସୌଭାଗ୍ୟବଶତଃ ପରଦିନ କୌଣସି କାରଣରୁ ଦୁର୍ଗାଦାସଙ୍କ ଫାଶୀ ଟଳିଗଲା।

ଶମ୍ଭାଜୀକୁ ଆଗ୍ରା ଡାକି ଆଣି ମାରିଦିଆଗଲା। ମରହଟ୍ଟାମାନେ କିଛି ଦିନ ଚୁପ୍ ରହିଲେ, ଔରଙ୍ଗଜେବ ବହୁତ ଖୁସିଥିଲେ, କାରଣ ଶାହଜାଦା ଆକବର ମକ୍କା ଚାଲିଗଲେ ଏବଂ ତହବର ଖାଁ ମୃତ୍ୟୁମୁଖରେ ପତିତ ହେଲା। ସେ ଭାବିଲେ, ଏବେ ଦୁର୍ଗାଦାସ ସହିତ ଲୋକ ଦେଖାଣିଆରେ ମିତ୍ରତା କରାଯାଉ। ପରଦିନ ଦରବାରକୁ ଡାକି ଖିଲ୍ଲତ ବଖସି ଏବଂ ଲୁନବାର ଜାଗିର ଫେରାଇ ଦେଲେ। ସେ ରାଜପୁତାନା ଆସି ମେଡତିଆ ଠାକୁର ଶ୍ୟାମସିଂଙ୍କ ପାଖରେ ରହିଲେ। ଔରଙ୍ଗଜେବ କିନ୍ତୁ ତାଙ୍କୁ ହତ୍ୟା କରିବାର ମତଲବରେ ରହି ତାଙ୍କ ପଛେ ପଛେ ସୈନ୍ୟ ସାମନ୍ତ ପଠାଇଲେ।

ଦୁର୍ଗାଦାସଙ୍କ ପାଖରେ ଏକହଜାର ସୈନ୍ୟ ଥିଲେ। ଏପାଖରେ

ମୋଗଲମାନଙ୍କର କୋଡ଼ିଏ ହଜାର ସୈନ୍ୟ ରହିଥିଲେ । ତାଙ୍କୁ ଦେବାରୀ ଘାଟିର ଆଶ୍ରୟ ମିଳିଗଲା । ମୋଗଲସେନା ଅଜଣା ଘାଟି ମଧ୍ୟରେ ପ୍ରବେଶ କରନ୍ତେ ରାଜପୁତମାନେ ସେମାନଙ୍କୁ ଘେରିଆଡୁ ଘେରିଯାଇ ପ୍ରଚଣ୍ଡ ଆକ୍ରମଣ କରିବାରୁ ବହୁସଂଖ୍ୟାରେ ମୋଗଲ ସୈନ୍ୟ ମରିଗଲେ ଏବେ ଯେଉଁମାନେ ରହିଲେ ସେମାନେ ପ୍ରାଣବିକଳରେ ଦିଲ୍ଲୀ ପଳାଇଲେ ।

ଦୁର୍ଗାଦାସ ଦେବାରୀରୁ ଯୋଧପୁର ଆସି ମେବାଡ଼ର ପାହାଡ଼ ମଧ୍ୟରେ ଲୁଚିରହିଥିବା ଅଜିତ୍ ସିଂହକୁ ଡାକି ସିଂହାସନରେ ବସାଇଲେ । ୧୮ ବର୍ଷ ପରେ ମହାରାଜ ଯଶୋବନ୍ତ ସିଂହଙ୍କ ନିକଟରେ କରିଥିବା ପ୍ରତିଜ୍ଞା ପୂରଣ ହେଲା ।

ମେଢ଼ାଡ଼ର ରାଣା ଜୟସିଂହ ନିଜ ଝିଆରୀର ବିବାହ ଅଜିତ୍ ସିଂହ ସହିତ ସମ୍ପନ୍ନ କରିଦେଇଥିଲେ ଏବଂ ନୂଆ ରାଣୀ ମଧ୍ୟ ସାଂଗରେ ଥିଲେ ।

ସନ ୧୬୯୮ ରେ ଯୋଧପୁରଠାରେ ଦରବାର ବସିଲା । ସାରା ରାଜସ୍ଥାନର ରାଜା ଏବଂ ଜାଗିରିଦାର ଭେଟି ଧରି ପହଞ୍ଚିଲେ । ଔରଙ୍ଗଜେବ ମଧ୍ୟ ମୂଲ୍ୟବାନ୍ ଉପହାର ପଠାଇଥିଲେ । ମୃତ୍ୟୁ ପୂର୍ବରୁ ଯଶୋବନ୍ତ ସିଂହ ଦୁର୍ଗାଦାସଙ୍କୁ ଗୋଟିଏ ବାକ୍ସ ଦେଇଥିଲେ । ସମସ୍ତଙ୍କ ସମାନାରେ ବାକ୍ସଟି ଖୋଲାଗଲା । ସେଥିରେ ବିଭିନ୍ନ ରତ୍ନ ଖଞ୍ଜାଯାଇଥିବା ମୁକୁଟ ଏବଂ ଏକ ମୂଲ୍ୟବାନ ତରବାରୀ ଥିଲା । ମୁକୁଟ ନୂତନ ମହାରାଜଙ୍କ ମଥାରେ ରଖି ତରବାରୀକୁ ତାଙ୍କ କମରରେ ବାନ୍ଧି ଦିଆଗଲା ।

ଦୁର୍ଗାଦାସ କହିଲେ, ''ମହାରାଜ! ମୋର ପ୍ରତିଜ୍ଞା ଆଜି ପୂରଣ ହେଲା । ମୋର ଏଥିନିମିତ୍ତ ଆନନ୍ଦର ସୀମା ରହୁନି । ଭଗବାନ ମୋର ତରବାରୀ ଏବଂ ପଗଡ଼ିର ମାନ ରଖିଲେ, ମୁଁ ମୋର ଶେଷଜୀବନ ତପସ୍ୟାରେ କାଟିବି । ତେଣୁ ଆପଣଙ୍କ ଠାରୁ ବିଦାୟ ନେଉଛି ।'' ଏହା କହି ନିଜର ରାଜସିକ ବେଶଭୂଷା ତ୍ୟାଗ କରି ଗୈରିକ ବସ୍ତ୍ର ଧାରଣ କଲେ । ଦରବାରରେ ଉପସ୍ଥିତ ସମସ୍ତେ ଏକ ସ୍ୱରରେ କହି ଉଠିଲେ–''ରାଜସନ୍ନ୍ୟାସୀ ଦୁର୍ଗାଦାସଙ୍କର ଜୟ ହେଉ ।'' ସମସ୍ତଙ୍କ ଚକ୍ଷୁରେ ଲୋତକ ଭରିଯାଇଥିଲା ।

ବୃଦ୍ଧ ଦୁର୍ଗାଦାସ ସନ୍ନ୍ୟାସୀ ବେଶରେ ଦଣ୍ଡ କମଣ୍ଡଳୁ ଧରି ଦରବାରରୁ ବାହାରିଗଲେ ।



# କାଳଜୟୀ ଶିବାଜୀ

୧୬୫୯ ମସିହାରେ ଅଣତିରିଶ ବର୍ଷର ଦୁର୍ବଳ ଶରୀରରେ ଶିବାଜୀ ଅଫଜଲଖାଁ ପରି ଦୁର୍ଦାନ୍ତ ପଠାଣକୁ ହତ୍ୟା କରିଥିଲେ। ଖାଁଙ୍କ ସହିତ ସେତେବେଳେ ଚାଳିଶ ହଜାର ସୈନ୍ୟ ଥିଲେ। ଶିବାଜୀଙ୍କ ନିକଟରେ କେବଳ ୧୦/୧୨ ହଜାର ମରହଟ୍ଟା ଓ ମାଓଲା ସୈନ୍ୟ ଥିଲେ। ପୁଣି ସେ ଦେଶଦ୍ରୋହୀ ବାଜିରାଓ ଘୋରପଡ଼େକୁ ତାର କିଲ୍ଲାକୁ ଯାଇ ମାରିଥିଲେ। ତାଙ୍କର ନାମ ଶୁଣିଲେ ବୀଜାପୁର ଓ ଦିଲ୍ଲୀର ସୈନ୍ୟମାନଙ୍କର ହୃତ୍‌କମ୍ପ ହେଉଥିଲା।

ବୀଜାପୁରର ରାଜମାତା ନିଜର ସରଦାରମାନଙ୍କୁ ଏକାଠି କରି ବହୁତ ଗାଳିଗୁଲଜ କଲେ, ଧିକ୍କାର କଲେ। ଶେଷରେ ତାଙ୍କର ଆଲା ସରଦାର ସିଦ୍ଦିଜୋହର ଶିବାଜୀଙ୍କୁ ଜୀବନ୍ତ କିମ୍ବା ମୃତ ଆଣିବା ପାଇଁ ତିରିଶ ହଜାର ସୈନ୍ୟ ଧରି ପାହ୍ନାଲଗଡ଼ କିଲ୍ଲା ଅଭିମୁଖେ ବାହାରିଲେ ଏବଂ କିଲ୍ଲାକୁ ଚାରିଆଡୁ ଘେରିଗଲେ। ଏହି କିଲ୍ଲା ସେସମୟରେ ଅତ୍ୟନ୍ତ ବଡ଼ ଥିଲା। ଔରଙ୍ଗଜେବ ପ୍ରଥମରୁ ଉତ୍‌କ୍ଷିପ୍ତ ଥିଲେ। ଏହି ସୁଯୋଗରେ ସେ ତାଙ୍କର ଆଲାସେନାପତି ମାମୁଁ ଶାଇସ୍ତା ଖାଁକୁ ଏକଲକ୍ଷ ସୈନ୍ୟଙ୍କ ସହିତ ଶିବାଜୀଙ୍କୁ ଧରିବା ପାଇଁ ପଠାଇଦେଲେ। ସେମାନଙ୍କ ମଧ୍ୟରୁ ଚାକଣ କିଲାକୁ ୨୦ ହଜାର ସୈନ୍ୟ ଚାରିପଟରୁ ଘେରିଗଲେ ଏବଂ ବାକି ୮୦ ହଜାର ସୈନ୍ୟ ସହିତ ସେ ନିଜେ ଶିବାଜୀଙ୍କର ପୁନାର ଲାଲମହଲ ଆଡ଼କୁ ଆଗେଇ ଗଲେ। କିଛି ଦେଶଦ୍ରୋହୀ ଏବଂ ଧର୍ମଦ୍ରୋହୀ ରାଜପୁତ ଏବଂ ମରହଟ୍ଟା ସରଦାର ଶାଇସ୍ତା ଖାଁଙ୍କ ପକ୍ଷରେ ଥିଲେ। ଏପରି ପରିସ୍ଥିତିରେ ମଧ୍ୟ ଶିବାଜୀ ମହାରାଜଙ୍କର ଧୈର୍ଯ୍ୟ ଚ୍ୟୁତି ହୋଇ ନଥିଲା।

ଯେତେବେଳେ ଚାରି ମାସ ଧରି ପାହ୍ନାଲଗଡ଼ ଘେରାବନ୍ଦୀ ହୋଇ ରହିଲା ଏବଂ ଚାକଣ କିଲାର ପତନ ତଥା ପୁନାର ଖବର ମିଳିଲା, ସେତେବେଳେ ସେ ଭାବିଲେ, ଏଠାରୁ ମୁଁ ପଳାଇ ଯିବା ଉଚିତ ହେବ। ମାତ୍ର ଏତେ ବଡ଼ ମଜବୁତ ସେନାଛାଉଣୀକୁ ଭେଦ କରି କିପରି ଯିବି?

ଜୁଲାଇ ୧୬୬୦ ର ଏକ ଭୟଙ୍କର ବର୍ଷାରାତିରେ ମହାରାଜ କେବଳ

୬୦୦ ସୈନିକଙ୍କ ସହିତ କିଲ୍ଲାର ଗୁପ୍ତଦ୍ୱାର ଦେଇ ଏକଶହ କିଲୋମିଟର ଦୂରରେ ଥିବା ବିଶାଳଗଡ଼ କିଲାକୁ ଯିବାକୁ ବାହାରିଲେ । ଅନ୍ଧକାର ରାତି । ଭୟଙ୍କର ଝଡ଼ବତାସ, ସେଥିରେ ପାହାଡ଼ିଆ ରାସ୍ତା, ପୁଣି ଶତ୍ରୁପକ୍ଷର ସମ୍ଭାବ୍ୟ ଆକ୍ରମଣର ଭୟ । ଏହା ସତ୍ତ୍ୱେ ସେ ସେଠାରୁ ବାହାରିଗଲେ । ସେ ବିଶାଳଗଡ଼ ପହଞ୍ଚି ତୋପ ନ ଫୁଟାଇବା ପର୍ଯ୍ୟନ୍ତ ସେନାପତି ବାଜିପ୍ରଭୁ ଅଳ୍ପ କେତେକ ସୈନ୍ୟ ସହିତ ସିଦ୍ଧିକି ସୈନିକମାନଙ୍କୁ ରୋକି ରଖିଥିଲେ । ଏହି ମରହଟ୍ଟା ବୀରମାନେ ନିଜର ସୈନ୍ୟମାନଙ୍କ ଠାରୁ ଦଶଗୁଣରୁ ବେଶୀ ସୈନିକଙ୍କୁ ମାରି ଶେଷରେ ନିଜେ ବି ପ୍ରାଣ ହରାଇଲେ । ଏପରି ଉଦାହରଣ କେବଳ ଚିତ୍ତୋରର ସିସୋଦିଆମାନଙ୍କ ସହିତ ସମାନ । ବିଶାଳଗଡ଼ ପହଞ୍ଚି ମଧ୍ୟ ଶିବାଜୀ ଅତ୍ୟନ୍ତ ବ୍ୟଥିତ ଥିଲେ । ତାର କାରଣ ପୁନାର ଲାଲମହଲରେ ମୋଗଲ ସେନାପତି ରହି ତାଙ୍କର ସୈନ୍ୟମାନଙ୍କ ଦ୍ୱାରା ଗୋବଧ ଏବଂ ପ୍ରଜାମାନଙ୍କ ଉପରେ ଅକଥନୀୟ ଅତ୍ୟାଗ୍ୱର ଚଳାଇ ଥିଲେ । ସେ ଅତ୍ୟନ୍ତ ମର୍ମାହତ ହୋଇ ପଡ଼ିଲେ ।

ଲୋକମାନେ ତ୍ରାହି ତ୍ରାହି କରୁଥିଲେ । ମରହଟ୍ଟା ସୈନ୍ୟମାନେ ହତୋତ୍ସାହ ହୋଇ ରାୟଗଡ, ପ୍ରତାପଗଡ଼ ଏବଂ ବିଶାଳଗଡ଼ କିଲାରେ ବସିରହିଥିଲେ । ବେଳେବେଳେ ବାହାରକୁ ଆସି ମୋଗଲମାନଙ୍କୁ ଏବଂ ବୀଜାପୁରର ଗ୍ରାମମାନଙ୍କରେ ପଶି ଧନ ଲୁଟୁଥିଲେ । ଶିବାଜୀ ନିଜର ମୁଖ୍ୟ ସର୍ଦ୍ଦାରଙ୍କୁ ବିଗ୍ୱର ବିମର୍ଶ କରିବା ପାଇଁ ରାୟଗଡ଼କୁ ଡକାଇଲେ । ମୋରୋପନ୍ତ ପିଙ୍ଗଲେ, ଚିମଣାଜୀ ଜେଧେ ଆଦି ଚିନ୍ତିତ ଅବସ୍ଥାରେ ବସି ରହିଥିଲେ । ଶାଇସ୍ତା ଖାଁକୁ ଲାଲମହଲରରୁ କିପରି ଭାବରେ ହଟାଇବେ, ସେ ବିଷୟରେ ସେମାନେ କୌଣସି ଉପାୟ ସ୍ଥିର କରିପାରୁ ନଥିଲେ ।

ଶିବାଜୀ ମହାରାଜ କହିଲେ, ଆମର ଛୋଟ-ମୋଟ ଆକ୍ରମଣରେ ବିଶାଳ ମୋଗଲ ସେନାର କିଛି ହେବ ନାହିଁ । ଯଦିଓ ଶାଇସ୍ତା ଖାଁ ମଦ୍ୟପ, ତଥାପି ତା ସହିତ ବାହାଦୁର ପଠାଣ ଏବଂ ସୈୟଦ ବି ଅଛନ୍ତି ଏବଂ ଦେଶଦ୍ରୋହୀ ରାଜପୁତ ସୈନିକମାନେ ବହୁ ସଂଖ୍ୟାରେ ଅଛନ୍ତି; କିଛି ମରାଠା ଫୌଜ ମଧ୍ୟ ଅଛି । ତେଣୁ ଏମିତି କିଛି ଉପାୟ କରାଯାଉ ଯାହାଦ୍ୱାରା ସେ ପୁନା ଛାଡ଼ି ଗ୍ୱଲିଯିବ ।

ମହାରାଜ ଏକ ଯୋଜନା ପ୍ରସ୍ତୁତ କଲେ । ସର୍ଦାରମାନେ ମହାରାଜଙ୍କର ସପକ୍ଷ ଏବଂ ବିପକ୍ଷରେ ନିଜ ନିଜ ମତ ଦେଲେ । ମାତ୍ର ଶେଷରେ ମହାରାଜଙ୍କ

କଥା ସର୍ବସମ୍ମତ ହେଲା ଏବଂ ସେମାନେ ତାହା କାର୍ଯ୍ୟକାରୀ କରିବା ପାଇଁ ଚେଷ୍ଟିତ ହେଲେ ।

ସନ ୧୬୬୨ ଚୈତ୍ର ଶୁକ୍ଳ ନବମୀ ଭଗବାନ ଶ୍ରୀରାମଙ୍କର ପବିତ୍ର ଜନ୍ମଦିନ ଥିଲା । ମହାରାଜ ମା ସାହିବାଙ୍କୁ ସମସ୍ତ କଥା କହିଲେ । ସେ ଜଣେ ବାହାଦୁର ଏବଂ ବୁଝିବା-ସୁଝିବା ମହିଳା ଥିଲେ । ଶିବାଜୀଙ୍କର କ୍ଷମତା ଏବଂ ସାହସ ବିଷୟରେ ତାଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା । ତଥାପି ଏକଲକ୍ଷ ମୋଗଲ ସୈନିକଙ୍କ ଦ୍ୱାରା ସୁରକ୍ଷିତ ସେନାପତି ଶାଇସ୍ତାଖାଁକୁ ହତ୍ୟା କରି ସକୁଶଳ ଫେରି ଆସିବାଟା ଅସମ୍ଭବ ବୋଲି ଜଣାପଡୁଥିଲା ।

କିନ୍ତୁ ଏହା ପୂର୍ବରୁ ତ ସେ ତିନିବର୍ଷ ତଳେ ଅଫଜଲଖାଁ ନିକଟକୁ ନିଜର ପୁତ୍ରକୁ ପଠାଇ ଏହାଠାରୁ ବଡ ଦୁଃସାହସିକ କାର୍ଯ୍ୟ କରିଥିଲେ । ତେଣୁ ଅତ୍ୟନ୍ତ ବ୍ୟଥିତ ମନରେ ଏଥର ବି ପୁତ୍ରକୁ ଆଲିଙ୍ଗନ କରି ତାଙ୍କୁ ଘୋର ଦୁର୍ଗମ ପଥରେ ପ୍ରେରଣ କଲେ । ତାଙ୍କ ସହିତ କେବଳ ଚାରିଶହ ସୈନିକ ଥିଲେ । ଏକଲକ୍ଷ ସୈନ୍ୟଙ୍କର ମୁକାବିଲା କରିବା ପାଇଁ ମାତ୍ର ଚାରିଶହ ସୈନିକ । ଅଦ୍ଭୁତ! ଇତିହାସରେ ଏହା ଏକ ଅଦ୍ୱିତୀୟ ଘଟଣା । ସେତେବେଳେ ରମଜାନ ମାସ ଚାଲିଥିଲା । ମୋଗଲ ସୈନିକମାନେ ମଦ୍ୟ-ମାଂସ ପେଟଭରି ଖାଇ ଶୋଇବାକୁ ଯାଉଥିଲେ । ଅଧିକାଂଶ ମଧ୍ୟ ଶୋଇଯାଇଥିଲେ । ଏହି ସମୟରେ ଶିବାଜୀ ନିଜର ଚାରିଶହ ସୈନ୍ୟ ଧରି ନିଧଡକ ହୋଇ ମୋଗଲ ଶିବିର ପାର ହୋଇ ଲାଲମହଲ ଆଡ଼କୁ ଚାଲିଲେ । ଜଗୁଆଳୀମାନେ ପଚାରିବାରୁ ସେ ଉତ୍ତରରେ କହିଲେ ଯେ ଆମେମାନେ ବାହାରର ପହରାଦାର । ତୁମେ ସବୁ ରୋଜା ଖୋଲି ଖୁବ୍ ଖାଇପିଇ ମସ୍ତ ରହିଛ, ଆଉ ଆମେ ସବୁ ଭୋକିଲା । ମୋଗଲ ସୈନ୍ୟମାନେ କିପରି ଜାଣିବେ ଯେ କେବଳ ଚାରିଶହ ସୈନ୍ୟ ମହଲରେ ପଶି ଆକ୍ରମଣ କରିବାକୁ ଯାଉଛନ୍ତି ।

ଆଲା ସେନାପତି ଏବଂ ଔରଙ୍ଗଜେବଙ୍କର ମାମୁଁ ଶାଇସ୍ତଖାଁ ନିଜର ହାରମ୍‌ରେ ମଦ୍ୟପାନ କରି ନିଘୋଡ଼ ନିଦରେ ଶୋଇଥିଲେ । ଶିବାଜୀ ଝରକା ଭାଙ୍ଗି ଭିତରକୁ ପଶିଗଲେ । ତାଙ୍କର ସାଂଗରେ ଯାଇଥିବା କିଛି ସୈନ୍ୟ ଅନେକ ଜଗୁଆଳୀମାନଙ୍କୁ ମାରି ପକାଇଲେ ।

ଖୁବ୍ ପାଟିଗୋଳ ଶୁଣି ଶାଇସ୍ତାଖାଁର ନିଦ ଭାଙ୍ଗିଗଲା । ହେଲେ ମଧ୍ୟ

ତାର ଚେତା ଫେରି ନଥିଲା । ମାତ୍ର ତାର ଭାଗ୍ୟ ଭଲ ଥିବାରୁ ବେଗମ ଘରମଧ୍ୟରେ ଜଳୁଥିବା ମଶାଲକୁ ନିଭାଇ ଦେଲା । ଏତିକିବେଳେ ଖାନ୍ ଝରକା ଦେଇ ତଳକୁ ଡେଇଁ ପଡ଼ିଲା । ଶିବାଜୀଙ୍କ ଖଣ୍ଡାରେ ତାର କେବଳ ତିନିଟା ଆଙ୍ଗୁଳି କଟି ଯାଇଥିଲା, ଖାନ୍ ବଞ୍ଚିଗଲା ।



ଶିବାଜୀ ଭାବିଲେ, ଏବେ ଏଠାରେ ରହିବା ଅର୍ଥ ମୃତ୍ୟୁକୁ ଡାକିଆଣିବା । ତାଙ୍କର ସୈନ୍ୟମାନେ ବି 'ମରହଟ୍ଟା ଆସ', 'ମାଓଲା ଆସ' ଡାକ ମାରି ମାରି ମୁଖ୍ୟ ଦ୍ୱାରରେ ପହଞ୍ଚିଗଲେ । ସେଠାରେ ମହାରାଜଙ୍କ ପାଇଁ ମୋରୋପନ୍ତ ଏବଂ ନେତାଜୀ ଘୋଡ଼ା ଧରି ପ୍ରସ୍ତୁତ ଥିଲେ । ସେ ତତ୍‌କ୍ଷଣାତ୍ ରାୟଗଡ଼କୁ ଚାଲିଗଲେ ।

ମୋଗଲ ସୈନିକମାନେ ତାଜୁବ୍ ହୋଇ କୁହାକୁହି ହେଲେ– "ପ୍ରକୃତରେ ଶିବାଜୀଙ୍କର ବଶରେ ଜିନ୍ନାତ ଅଛନ୍ତି । ନହେଲେ ଖାଁଙ୍କର ଆଙ୍ଗୁଳି କାଟି ଏଠାରୁ ପଳାଇ ପାରି ନଥାନ୍ତେ ।"

ଏପଟେ ଖାଁ ଖଣ୍ଡିଆ ହୋଇ ଗାଳି ଫଜିତ୍ କରୁଥିଲା । ରାତି ଦୁଇଟାରେ ବହୁସଂଖ୍ୟକ ମୋଗଲ ସୈନ୍ୟ ଶିବାଜୀଙ୍କୁ ଧରିବାକୁ ବାହାରିଲେ । ମାତ୍ର ସେ ତ ପ୍ରଥମରୁ ସମସ୍ତ ଯୋଜନା ସୁଗ୍ପୁରୁ ରୂପେ କରିଥିଲେ । ସେ ଅନେକ ବଳଦଙ୍କ ଶିଙ୍ଗରେ କନା ଗୁଡ଼ାଇ ସେଥିରେ ତେଲ ଢାଳି ଏକାଠି ରଖିଥିଲେ ।

ସେମାନଙ୍କ ଶିଙ୍ଗରେ ନିଆଁ ଲଗାଇ ଦେବାରୁ ସେମାନେ ଜୋର୍‌ରେ ଦୌଡ଼ିଲେ । ମୋଗଲ ସୈନ୍ୟମାନେ ଅନ୍ଧାର ରାତିରେ ମଶାଲ ଆଲୁଅ ଦେଖି ଭାବିଲେ ଯେ ମରହଟ୍ଟା ସୈନ୍ୟମାନେ ପଳାଇ ଯାଉଛନ୍ତି । ତେଣୁ ସେମାନେ ତାଙ୍କ ପଛରେ ଧାଇଁଲେ । ରାତି ପାହିବାରୁ ଦେଖିଲେ ଯେ ମରହଟ୍ଟା ସୈନ୍ୟ ନୁହେଁ, କେବଳ ବଳଦ ଏବଂ ମହିଁଷି ଦଳ । ସେମାନଙ୍କୁ ଲଜ୍ଜିତ ହୋଇ ଫେରିବାକୁ ପଡ଼ିଥିଲା ।

ମହାରାଜ ରାୟଗଡ଼ ପହଞ୍ଚି ତାଙ୍କର ମା'ଙ୍କର ଚରଣ ସ୍ପର୍ଶ କରି ପ୍ରଣାମ କଲେ । ମହାରାଜ କହିଲେ, "ମା-ସାହିବା! ଆପଣଙ୍କର କୃପାରୁ ଆମେ ନିରାପଦରେ ଫେରିଲୁ । ଆପଣ ତ ଭଗବାନ ରାମଙ୍କ ଜନ୍ମ ବ୍ରତ କରିଛନ୍ତି । ମାତ୍ର ମୋତେ ବଡ଼ ଭୋକ ହେଉଛି । ଆପଣ ମୋତେ ଆପଣଙ୍କ ହାତରେ ପ୍ରସାଦ ଖୋଇଦିଅନ୍ତୁ ।"

ଜୀଜାବାଈ ଶିବାଜୀ ମହାରାଜଙ୍କୁ ଛୁଆପୁଅ ପରି ନିଜ ହାତରେ ଖୁଆଇ ଦେଲେ । ଖୋଇ ଦେଲା ବେଳେ ତାଙ୍କଠାରୁ ଲାଲମହଲଠାରେ ଘଟିଥିବା କାର୍ଯ୍ୟକଳାପ ବିଷୟରେ ଶୁଣି ଶୁଣି ହସୁଥିଲେ । ଶିବାଜୀ ମହାରାଜଙ୍କର ବୀରତ୍ୱ ଚତୁର୍ଦ୍ଦିଗରେ ପ୍ରଘଟ ହେଲା । ଅତ୍ୟାଗ୍ରିତ ଅବସ୍ଥାରେ ଥିବା ଲୋକମାନଙ୍କର ଶିବାଜୀ ମହାରାଜଙ୍କ ଉପରେ ଆସ୍ଥା ବଢ଼ି ଯାଇଥିଲା । ସେମାନଙ୍କର ଆନନ୍ଦର କାରଣ ଥିଲା ଯେ ତାଙ୍କ ପାଇଁ ଜଣେ ରକ୍ଷକ ଅଛନ୍ତି ।

ଅଫଜଲ ଖାଁ ଏବଂ ସିଦ୍ଧିଜୋହର ଠାରୁ ଲାଲମହଲ ଆକ୍ରମଣ ଆହୁରି ଅଧିକ ମହତ୍ତ୍ୱପୂର୍ଣ୍ଣ କଥା ଥିଲା । ଶାଇସ୍ତା ଖାଁର ସାହସ ଭାଙ୍ଗି ଯାଇଥିଲା । ଏହାପରେ ପୁନା ବା ମହାରାଷ୍ଟ୍ରରେ ରହିଲେ ତାର ଜୀବନ ପ୍ରତି ବିପଦ ଥିବାରୁ କିଛିଦିନ ପରେ ସେ ଆଗ୍ରା ଚାଲିଯାଇଥିଲା ।



# ଶିବାଜୀଙ୍କର ଐତିହାସିକ ପତ୍ର

ମାମୁଁ ଶାଇସ୍ତାଖାଁ ପୁନାରୁ ଦିଲ୍ଲୀ ପଳାଇ ଆସି ଔରଙ୍ଗଜେବଙ୍କୁ ଲାଲମହଲ ଉପରେ ଶିବାଜୀଙ୍କର ଆକ୍ରମଣ ବିଷୟରେ ସମସ୍ତ ଘଟଣା କହିଲା ଏବଂ ନିଜର ଡାହାଣ ହାତର କଟିଯାଇଥିବା ଆଙ୍ଗୁଳି ଦେଖାଇଲା। ଆଲା ସେନାପତି ଅତ୍ୟନ୍ତ ଗମ୍ଭୀର ଭାବରେ ଥିଲେ। ଔରଙ୍ଗଜେବ ଖୁବ୍ ରାଗିଯାଇ କହିଲେ, କୋଡ଼ିଏ ହଜାର ସାମାନ୍ୟ ଧରଣର ସୈନ୍ୟଙ୍କୁ ନେଇ ଶିବାଜୀ କେମିତି ମୋଗଲ ବାଦଶାହଙ୍କର ଏକଲକ୍ଷ ସୈନ୍ୟର ମୁକାବିଲା କରି ପାରିଲେ? କିନ୍ତୁ ଏହି କଥା ଅବିଶ୍ୱସନୀୟ ହେଲେ ମଧ୍ୟ ସତ୍ୟ ଥିଲା।

ଔରଙ୍ଗଜେବ ଜଣେ ବିଚକ୍ଷଣ କୂଟନୀତିଜ୍ଞ ଥିଲେ। ସେ ଭାବିଲେ, ତାଙ୍କର ହିନ୍ଦୁସୈନ୍ୟମାନଙ୍କୁ ଦକ୍ଷିଣକୁ ପଠାଯାଉ। ଦୁଇଆଡୁ ହିନ୍ଦୁମାନେ ମରିବେ। ଆମେରର ରାଜା ମିର୍ଜା ଜୟସିଂହଙ୍କୁ ଉକ୍ତ ଦାୟିତ୍ୱ ଦିଆଗଲା। ସେ ମୋଗଲମାନଙ୍କର ବଡ଼ ସେନାପତି ଥିଲେ ଏବଂ ପାଞ୍ଚପୁରୁଷ ଧରି ମୋଗଲମାନଙ୍କର ଗୋଲାମି କରୁଥିଲେ। ସେ ଭଲ ଭଲ ସୈନିକ ଯୋଗାଡ଼ କରିବାରେ ଅଦ୍ୱିତୀୟ ଥିଲେ। ଔରଙ୍ଗଜେବ ଚତୁରତା ଅବଲମ୍ବନ କରି ରାଜା ଜୟସିଂହଙ୍କ ସହିତ ଅନ୍ୟ ଏକ ସେନାପତି ଦିଲେର ଖାଁକୁ ପଠାଇଦେଲେ। ଫୌଜରେ ଅଧିକାଂଶ ଥିଲେ ହିନ୍ଦୁ। ୧୬୬୫ ମସିହା ଫେବୃୟାରୀ ମାସରେ ମୋଗଲ ଫୌଜ ବୁରହାନପୁର ପହଞ୍ଚିଗଲେ, ଯେଉଁ ସ୍ଥାନଟି ଦାକ୍ଷିଣାତ୍ୟର ଦ୍ୱାର ସଦୃଶ ଥିଲା।

ରାଜା ଜୟସିଂହ ଶିବାଜୀଙ୍କ ସହିତ ଯୁଦ୍ଧ କରିବାକୁ ଇଚ୍ଛା କରୁଥିଲେ। କିନ୍ତୁ ଶିବାଜୀ ତାଙ୍କ ଠାରୁ ଅତ୍ୟନ୍ତ ବୁଦ୍ଧିମାନ ଥିଲେ। ସେ ନିଜର ସୀମିତ ସୈନ୍ୟଶକ୍ତି ବିଷୟରେ ମଧ୍ୟ ଅବଗତ ଥିଲେ। ସେ ଯେପରି ଦୁଇ ଦଳ ସୈନ୍ୟଙ୍କ ଆକ୍ରମଣରେ ଫସି ନଯାଆନ୍ତି, ସେ ବିଷୟରେ ଚିନ୍ତା କରୁଥିଲେ। ଶିବାଜୀଙ୍କୁ ଖବର ମିଳିଥିଲା ଯେ ଏଥର ସୈନ୍ୟବାହିନୀ ମଧ୍ୟରେ ବେଶୀଭାଗ ହିନ୍ଦୁ ଅଛନ୍ତି। ଏହି ସମୟରେ ତାଙ୍କ ଅଧୀନରେ କେବଳ ୨୦ ହଜାର ସୈନ୍ୟ ଥିଲେ; ତାଙ୍କ ପାଖରେ ସେପରି ଉତ୍କୃଷ୍ଟ ଅସ୍ତ୍ରଶସ୍ତ୍ର ନଥିଲା, ଯାହା ବି ଥିଲା ଖୁବ୍ କମ୍। ମୋଗଲ ସୈନିକମାନଙ୍କ ପାଖରେ ବହୁସଂଖ୍ୟାରେ

ହାତୀ, ଘୋଡ଼ା, ଓଟ, ଛୋଟ ବଡ଼ ତୋପ ଏବଂ ବନ୍ଧୁକ ବି ଥିଲା। ତେଣୁ ଶିବାଜୀ ଜୟସିଂଙ୍କୁ ଭେଦନୀତି ଦ୍ୱାରା ଦୂରରେ ରଖିବାକୁ ଚାହୁଁଥିଲେ। ତାଙ୍କୁ ଜଣାଥିଲା ଯେ ଜୟସିଂହ ଜଣେ ଧାର୍ମିକ ବ୍ୟକ୍ତି। ସେ ପ୍ରତିଦିନ ପୂଜା କରୁଥିଲେ ଏବଂ ଗୋବିନ୍ଦଦେବଙ୍କ ଭକ୍ତ ମଧ୍ୟ ଥିଲେ।

ଔରଙ୍ଗଜେବ ପୂର୍ବ କେତେ ବର୍ଷରୁ ମଥୁରା, କାଶୀ ଏବଂ ଜୟପୁରର ବହୁତ ମନ୍ଦିର ଭାଙ୍ଗି ଦେଇଥିଲେ। ଏଥିନିମିତ୍ତ ଜୟସିଂହ ଅତ୍ୟନ୍ତ ଦୁଃଖୀ ଥିଲେ। ଶିବାଜୀ ତାଙ୍କ ମନ ମଧ୍ୟରେ ହିନ୍ଦୁତ୍ୱର ଭାବନା ଜାଗ୍ରତ କରି ଗୋଟିଏ ବଡ଼ଧରଣର ମୋର୍ଚ୍ଚା ଗଢ଼ିବାକୁ ଚାହୁଁଥିଲେ। ସେ ନିଜେ ନେତା ହେବାକୁ ଲାଳାୟିତ ନ ଥିଲେ। ମେବାଡ଼ର ରାଣା ଜୟସିଂହ, ରାଜା ଜୟସିଂହ ଏବଂ ଯୋଧପୁରର ରାଜା ଯଶୋବନ୍ତସିଂହ–ଯାହାକୁ ହେଲେ ନେତୃତ୍ୱ ଦେବାକୁ ପ୍ରସ୍ତୁତ ଥିଲେ। ତାଙ୍କର ଲକ୍ଷ୍ୟ ଥିଲା–ଯେମିତି ହେଲେ ବିଦେଶୀ ମୋଗଲ ସୈନିକମାନଙ୍କୁ ଛିନ୍ନ ଭିନ୍ନ କରିବା, ଯାହାଦ୍ୱାରା କି ହିନ୍ଦୁଧର୍ମ ମଜବୁତ୍ ହୋଇ ଦେଶରେ ଆର୍ଯ୍ୟସଂସ୍କୃତି ଫେରି ଆସିବ।

ଶିବାଜୀ ଭାବିଲେ, ଜୟସିଂହଙ୍କୁ ଥରେ ଭେଟି ସମସ୍ତ ବିଷୟ ଅବଗତ କରାଇ ଦିଆଯାଉ। ଜୟସିଂହ ଦେଶ ବିଷୟରେ ମଧ୍ୟ ଭଲମନ୍ଦ କଥା ଚିନ୍ତା କରୁଥିଲେ ଏବଂ ତାଙ୍କ ମନ ମଧ୍ୟରେ ମନ୍ଦିର ଧ୍ୱଂସ ହେବା ଦୁଃଖ ଥିଲା। ଶିବାଜୀ ଏ ସମସ୍ତ ଚିନ୍ତା କରି ଜୟସିଂହଙ୍କ ନିକଟକୁ ଗୋଟିଏ ଚିଠି ଲେଖିଲେ। ଏହି ଚିଠିଟି ଏବେ ମଧ୍ୟ ରାଷ୍ଟ୍ରିୟ ସଂଗ୍ରହାଳୟରେ ମହଜୁଦ୍ ଅଛି। ଏହି ଚିଠି ପଢ଼ିଲା ପରେ ଜଣାପଡ଼େ ଯେ ଧର୍ମ ପ୍ରତି ମହାମାନବ ଶିବାଜୀଙ୍କର ଶ୍ରଦ୍ଧା-ଭକ୍ତି କିପରି ଭରି ରହିଥିଲା। ଶିବାଜୀ ଉକ୍ତ ଚିଠି ରାୟଗଡରୁ ଫେବୃୟାରୀ ୧୬୬୫ ମସିହାରେ ଲେଖିଥିଲେ। ସେ ଲେଖିଥିଲେ–

"ହେ ଶ୍ରୀରାମଚନ୍ଦ୍ରଙ୍କର ହୃଦୟାଂଶ! ତୁମର ରାଜପୁତମାନଙ୍କ ନିମିତ୍ତ ଅନନ୍ତ ପ୍ରୀତି। ହେ ବୁଦ୍ଧିମାନ ଜୟଶାହ! ଶିବାଙ୍କର ପ୍ରଣାମ ସ୍ୱୀକାର କରିବ। ଜଗତର ନାଥ ତୁମକୁ ଧର୍ମ-ନ୍ୟାୟର ମାର୍ଗ ଦର୍ଶନ କରାଇ ଦିଅନ୍ତୁ।

ମୁଁ ଜାଣିବାକୁ ପାଇଛି ମୋ ଉପରେ ଏବଂ ଦକ୍ଷିଣପ୍ରାନ୍ତରେ ବିଜୟ ନିମିତ୍ତ ତୁମକୁ ଦାୟିତ୍ୱ ଦିଆଯାଇଅଛି। ହିନ୍ଦୁମାନଙ୍କ ଲୁହ ଓ ଲହୁରେ ତୁମେ ସଂସାରରେ ଯଶସ୍ୱୀ ହେବାକୁ ଚାହୁଁଛ–ମାତ୍ର ତୁମେ ଜାଣିବା ଉଚିତ ଯେ ଏହା ତୁମ ଉପରେ

ଏକ କାଳିମା ଆଣିଦେବ; କାରଣ ଏହା ଦ୍ୱାରା ଦେଶ ଏବଂ ଧର୍ମ ସଂକଟରେ ପଡ଼ିଯିବ । ଯଦି ତୁମେ ନିଜେ ଦକ୍ଷିଣପ୍ରାନ୍ତ ଜୟ କରିବାକୁ ଆସିଥାନ୍ତ, ତେବେ ମୋର ମସ୍ତକ ଏବଂ ଚକ୍ଷୁ ତୁମ ପଥର କୋମଳ ଗାଲିଗ୍ ହୋଇ ଯାଇଥାଆନ୍ତା । ମୁଁ ତୁମ ବୃହତ୍ ସୈନ୍ୟବାହିନୀର ଅଗ୍ରଦୂତ ହୋଇ ତୁମକୁ ବିଜୟ ଆଣି ଦେଇ ଥାଆନ୍ତି । ମାତ୍ର ତୁମେ ଔରଙ୍ଗଜେବଙ୍କ ତରଫରୁ ଆସିଛ । ତେଣୁ ମୁଁ ଏବେ ଜାଣିପାରୁନାହିଁ ଯେ ତୁମ ସହିତ କେଉଁ ଖେଳ ଖେଳିବି? ଯଦି ମୁଁ ତୁମ ସହିତ ମିଶିଯାଏ, ତେବେ ଏହାକୁ ପୁରୁଷତ୍ୱ ଆଖ୍ୟା ଦିଆଯାଇ ପାରିବ ନାହିଁ; କାରଣ ପ୍ରକୃତ ପୁରୁଷ ଅବସରବାଦୀ ହୁଏ ନାହିଁ । ସିଂହ ଶୃଗାଳର କାର୍ଯ୍ୟ କରେ ନାହିଁ । ଆଉ ଯଦି ମୁଁ ତରବାରୀ ଏବଂ କୁଠାର ଦ୍ୱାରା କାର୍ଯ୍ୟ ନିର୍ବାହ କରିବାକୁ ଯାଏ, ତେବେ ହିନ୍ଦୁମାନଙ୍କର ହିଁ ଅଶେଷ କ୍ଷତି ଘଟିବ । ସେ ଅନ୍ୟାୟୀ, ଅଧର୍ମୀ, ପାପୀ ଏବଂ ମନୁଷ୍ୟରୂପରେ ଗୋଟିଏ ରାକ୍ଷସ । ଅଫଜଲ ଖାଁ ଏବଂ ଶାଇସ୍ତା ଖାଁ ଦ୍ୱାରା କିଛି ନ ହେବାର ଦେଖି, ସେମାନଙ୍କ ଠାରୁ ଆଶା ହରାଇ ଏଥର ତୁମକୁ ଆମ ସହିତ ଯୁଦ୍ଧ କରିବାକୁ ପଠାଇ ଅଛି । ସେ ସ୍ୱୟଂ ଆମ ଆକ୍ରମଣର ପ୍ରତିରୋଧ କରିବାରେ ଅକ୍ଷମ । ସେ ଦୃଷ୍ଟିରୁ ସେ ଗ୍ରହେଁ ଯେ ହିନ୍ଦୁମାନଙ୍କ ମଧ୍ୟରେ କୌଣସି ବଳବାନ୍ ତଥା ବାହାଦୁର ବ୍ୟକ୍ତି ନ ରହନ୍ତୁ । ସିଂହ-ସିଂହ ପରସ୍ପର ମଧ୍ୟରେ ଲଢ଼ାଇ କରି ଅବଶ ହୋଇଯାଆନ୍ତୁ । ଏହି ଗୁପ୍ତ ଭେଦକୁ ତୁମେ କିପରି ଜାଣିପାରୁ ନାହଁ?

ତୁମେ ସଂସାରରେ ବହୁତ ଭଲ-ମନ୍ଦ ଦେଖିଛ । ତୁମ ଆମ ମଧ୍ୟରେ ଯୁଦ୍ଧ ହେବା ଠିକ୍ ନୁହେଁ ବୋଲି ଜାଣିବା ଉଚିତ । ତୁମେ ମଧ୍ୟ ଇଚ୍ଛା କରିବା ଉଚିତ ନୁହେଁ ଯେ ହିନ୍ଦୁମାନଙ୍କର ଶରୀର ଧୂଳିସାତ୍ ହେଉ । ବ୍ୟାଘ୍ର ମୃଗ ଆଦିଙ୍କ ଉପରେ ଆଘାତ କରେ । ମାତ୍ର ସିଂହ ସହିତ ଗୃହଯୁଦ୍ଧରେ ପ୍ରବୃତ୍ତ ହୁଏ ନାହିଁ । ଯଦି ତୁମ ତରବାରୀର ତୀକ୍ଷ୍ଣତା ଅଛି, ତେବେ ଧର୍ମର ଶତ୍ରୁମାନଙ୍କ ଉପରେ ଆକ୍ରମଣ କରିବା ତୁମର କର୍ତ୍ତବ୍ୟ । ତୁମେ ଯଶୋବନ୍ତ ସିଂହଙ୍କୁ ପ୍ରତାରିତ କରିଛ । ତୁମେ ହୃଦୟରେ ଉଚ୍ଚ-ନୀଚର ବିଗ୍ୱର କଲ ନାହିଁ । ଶୃଗାଳ ପରି ଖେଳ ଖେଳି ମନ ନ ମାନିବାରୁ ସିଂହ ସହିତ ଯୁଦ୍ଧ କରିବାକୁ ଆଗେଇ ଆସିଛ । ତୁମକୁ ଏହି ଧାଁ-ଧପଡ଼ରେ କଣ ମିଳୁଛି? ସେ ନୀଚର କୃପାପାତ୍ର ହୋଇ ଅଭିମାନ କରିବାଟା କଣ ଶୋଭନୀୟ? ତୁମକୁ

କଣ ଜଣା ନାହିଁ ସେ କ୍ରୂର ବାଦଶାହର ହିନ୍ଦୁମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର? ତୁମକୁ କଣ ଜଣା ନାହିଁ ସେ କୁମାର ଛତ୍ରସାଲର କି ପ୍ରକାର କ୍ଷତି ସାଧନ କରିବାକୁ ଚାହିଁଥିଲା? ମୁଁ ମାନୁଛି ଯେ ତୁମେ ତା ସହିତ ସମ୍ବନ୍ଧ ଯୋଡ଼ିଛ; ମାତ୍ର ସେ ରାକ୍ଷସ ପାଇଁ ଏ ବନ୍ଧନଟା ଇଜ୍ଜତ ଠାରୁ ଅଧିକ ଦୃଢ଼ ନୁହେଁ। ସେ ତ ତାର ସ୍ୱାର୍ଥ ସାଧନ ପାଇଁ ନିଜ ଭ୍ରାତୃରକ୍ତ ତଥା ପିତୃପ୍ରାଣ ନେବାକୁ ମଧ୍ୟ କୁଣ୍ଠିତ ହୁଏ ନାହିଁ।

ଯଦି ତୁମର ନିଜ ବୀରତା ନିମିତ୍ତ ଗର୍ବ ଥାଏ, ତେବେ ନିଜର ଜନ୍ମଭୂମିକୁ ଶୋକ ସନ୍ତାପରୁ ରକ୍ଷା କରି ହିନ୍ଦୁମାନଙ୍କର ଅଶ୍ରୁମୋଚନ କରିବାରେ ଆଗଭର ହୁଅ। ଏଇଟା ଆମଭିତରେ ପରସ୍ପର ଲଢ଼ାଇ କରିବାର ସମୟ ନୁହେଁ, କାରଣ ହିନ୍ଦୁମାନଙ୍କ ଉପରେ ଅତ୍ୟନ୍ତ କଠିନ ସମସ୍ୟା ରହିଅଛି। ଆମର ପିଲା, ଦେଶ, ଧନ, ଦେବ, ଦେବାଳୟ ତଥା ପବିତ୍ର ଦେବପୂଜକମାନଙ୍କ ଉପରେ ଘୋର ବିପତ୍ତି ପଡ଼ିଯାଇଛି, ଯାହା ସମସ୍ତ ସୀମା ଟପି ଯାଇଛି। ଯଦି ତାର ଏପରି ଅତ୍ୟାଚାର ଆଉ କିଛି ଦିନ ଚାଲିବ, ତେବେ ଆମମାନଙ୍କର ପୃଥିବୀପୃଷ୍ଠରେ ଚିହ୍ନବର୍ଣ୍ଣ ରହିବ ନାହିଁ। ବଡ଼ ଆଶ୍ଚର୍ଯ୍ୟର କଥା ଯେ ମୁଷ୍ଟିମେୟ ମୁସଲମାନ ଆମର ଏତେ ବଡ଼ ଦେଶରେ ପ୍ରଭୁତ୍ୱ ଜାରିରଖିଛନ୍ତି। ଯଦି ଅକଲ ଥାଏ, ତେବେ ବିଚାର କରି ଦେଖ ସେମାନେ ଆମ ସହିତ କିପରି ଧୋକାବାଜି ଚଳାଇଛନ୍ତି। ସେମାନେ ଆମରି ମୁଣ୍ଡକୁ ଆମରି ଖଣ୍ଡାରେ କାଟି ଚାଲିଛନ୍ତି।

ଆମମାନଙ୍କୁ ହିନ୍ଦୁସ୍ଥାନ ତଥା ହିନ୍ଦୁଧର୍ମ ପାଇଁ ଅତ୍ୟଧିକ ପ୍ରଯତ୍ନ କରିବା ଦରକାର। ଯଦି ତୁମେ ଯଶୋବନ୍ତ ସିଂହ ସହିତ ମିଶିଯିବ ଏବଂ ରାଣାଙ୍କ ସହିତ ଏକମନ ହୋଇଯିବ, ତେବେ ଆମର ଏକ ମସ୍ତବଡ଼ କାର୍ଯ୍ୟ ସମ୍ପନ୍ନ ହୋଇଯିବ। ଚାରିଆଡୁ ଘେରି ତୁମେମାନେ ଯୁଦ୍ଧ କର। ସେ ସର୍ପର ମୁଣ୍ଡକୁ ପଥର ତଳେ ଚାପିଦିଅ। ମୁଁ ଏପଟରୁ ଭାଲାଚାଳକ ବୀରମାନଙ୍କ ସଙ୍ଗରେ ଯାଇ ତା ମଗଜକୁ କାଢ଼ି ଆଣିବି। କଳାମେଘ ପରି ଗର୍ଜନ କରୁଥିବା ସୈନ୍ୟମାନଙ୍କୁ ନେଇ ମୁସଲମାନମାନଙ୍କ ଉପରେ ଖଣ୍ଡାରୂପୀ ଜଳବର୍ଷା କରିବି। ତାପରେ ମୁଁ ସୁଦକ୍ଷ ବୀର ସୈନିକମାନଙ୍କ ସହିତ ପ୍ରଚଣ୍ଡ ବେଗରେ ପ୍ରବହମାନ ନଦୀସମ ଦକ୍ଷିଣଦିଗର ପର୍ବତରୁ ବାହାରି ଯୁଦ୍ଧକ୍ଷେତ୍ରରେ ପ୍ରବେଶ କରି ଅତି ଶୀଘ୍ର ତୁମମାନଙ୍କର ସେବା ନିମିତ୍ତ ଉପସ୍ଥିତ ହେବି। ଆମେମାନେ ଆମର

ସୁଦକ୍ଷ ସେନାରୂପୀ ସୁଉଚ୍ଚ ତରଙ୍ଗମାଳାକୁ ନେଇ ଦିଲ୍ଲୀ ଦରବାରର ସେହି ଜର୍ଜର ମହଲକୁ ଭସାଇ ଦେଇପାରିବା । ସେଇ କ୍ରୂର ବାଦଶାହର ଅତ୍ୟାଗ୍ରହୀ ଖଡ୍‌ଗ ଏବଂ ତାର କପଟ ଜାଲ ନିଃଶେଷ ହୋଇଯିବ । ଏ କାର୍ଯ୍ୟ ବେଶୀ କିଛି କଷ୍ଟକର ନୁହେଁ, କେବଳ ପରସ୍ପର ମଧ୍ୟରେ ନିବିଡ଼ ବନ୍ଧୁତା ଏବଂ ଏକମନ ଏକାନ୍ତ ଆବଶ୍ୟକ । ଦୁଇଟି ହୃଦୟ ଏକ ହୋଇଗଲେ ପର୍ବତକୁ ଟଳା ଯାଇପାରେ । ସବୁକିଛି ପତ୍ରଦ୍ୱାରା ଜଣାଇବା ଅସମ୍ଭବ । ମୁଁ ଗ୍ରହୁଁଛି, ଆମେମାନେ ପରସ୍ପର ଏକମନ ହୋଇ ଆଲୋଚନା କରିବା, ଯାହାଦ୍ୱାରା କି ଅଯଥା ଦୁଃଖ ଏବଂ ଶ୍ରମ ହେବ ନାହିଁ । ଯଦି ତୁମେ ଗ୍ରହିଁବ, ମୁଁ ତୁମ ନିକଟକୁ ଆସି ତୁମ କଥା ଶୁଣିବାକୁ ପ୍ରସ୍ତୁତ ।

ମୁଁ ମୋର ତରବାରୀ ତଥା ଧର୍ମ ନାମରେ ଶପଥ କରୁଛି ଯେ ତୁମ ଉପରେ କଦାପି ବିପଦ ଆସିବ ନାହିଁ । ଅଫଜଲ ଖାଁର ଶେଷ ପରିଣାମକୁ ଦେଖି ଶଙ୍କିତ ହୁଅ ନାହିଁ, କାରଣ ତାଠାରେ ସଚ୍ଚୋଟତା ନଥିଲା । ସେ ମୋତେ ମାରିବାର ଯୋଜନାରେ ଥିଲା । ଯଦି ମୁଁ ପ୍ରଥମରୁ ତାକୁ ସଫା ନ କରିଥାନ୍ତି, ଏ ପତ୍ର ତୁମକୁ କିଏ ଲେଖିଥାନ୍ତା? ଯଦି ମୁଁ ତୁମର ଉତ୍ତର ପାଇବି, ତେବେ ରାତି ଅଧରେ ଏକାକୀ ତୁମ ସହିତ ସାକ୍ଷାତ୍ କରିବି । ମୁଁ ତୁମକୁ ସେହି ଗୁପ୍ତ ପତ୍ର ସବୁ ଦେଖାଇବି ଯାହାକୁ ମୁଁ ଶାଇସ୍ତା ଖାଁର ପକେଟରୁ କାଢ଼ି ଆଣିଥିଲି । ଯଦି ସେ ପତ୍ର ତୁମକୁ ନ ସୁହାଇବ, ତେବେ ତୁମ ତରବାରୀ ଓ ସେନା ତ ଅଛି ନା? କାଲି ଯେତେବେଳେ ସୂର୍ଯ୍ୟ ଅସ୍ତ ହେବେ, ସେତେବେଳେ ମୋର ଖଂଗ ମ୍ୟାନକୁ ଫୋପାଡ଼ିଦେବ ।"

—ଶିବାଜୀ

ଶିବାଜୀଙ୍କର ଚିଠି ପଢ଼ିଲା ପରେ ଜୟସିଂହଙ୍କ ମନରେ ତାଙ୍କ ପ୍ରତି ଶ୍ରଦ୍ଧା ଏବଂ ସମ୍ମାନ ବଢ଼ିଗଲା । ସେ ଭାବିଲେ, ପ୍ରକୃତରେ ଶିବାଜୀ ଏକମାତ୍ର ଯୁବକ ଯେ କି ଏକୁଟିଆ ମୋଗଲ ସାମ୍ରାଜ୍ୟ ସହିତ ହିନ୍ଦୁଧର୍ମର ରକ୍ଷା ନିମନ୍ତେ ଲଢ଼ାଇ କରୁଛନ୍ତି । ମାତ୍ର ଜୟସିଂଙ୍କର ଔରଙ୍ଗଜେବ ଠାରୁ ଅଲଗା ହୋଇଯିବା ପାଇଁ ସାହସ ନଥିଲା ।

ନୂତନ ସନ୍ଧି ଅନୁସାରେ ଶିବାଜୀ ନିଜର ସୈନ୍ୟମାନଙ୍କ ସହିତ ଜୟସିଂହଙ୍କ ସହିତ ମିଶି ଯାଇଥିଲେ । ମାତ୍ର ଜୟସିଂହଙ୍କର ସହାୟକ ସେନାପତି ଦିଲେର ଖାଁ ସର୍ବଦା ତାଙ୍କର ଚୁଗୁଲି କରୁଥିଲେ ଏବଂ ମନ ମଧ୍ୟରେ ତାଙ୍କର ଶତ୍ରୁତା

ଥିଲା। ତାଙ୍କର ଇଚ୍ଛା ଥିଲା ମୌକା ମିଳିଲେ ସେ ତାଙ୍କୁ ହତ୍ୟା କରିବେ।

ଦିନେ ବାଦଶାହଙ୍କର ପତ୍ର ମିଳିଲା ଯେ, ଶିବାଜୀ ଏବଂ ତାଙ୍କର ପୁତ୍ରଙ୍କୁ ଆଗ୍ରା ପଠାଇ ଦିଅ। ମୁଁ ସେମାନଙ୍କ ସହିତ ମିଶିବାକୁ ଚାହୁଁଛି, ମୁଁ ତାଙ୍କୁ ସମ୍ମାନିତ କରିବି।

ଜୀଜାବାଇ ସେମାନଙ୍କୁ ଆଗ୍ରା ପଠାଇବାକୁ ଇଚ୍ଛା କରୁ ନଥିଲେ। ମାତ୍ର ମହାରାଜ କହିଲେ, ଆପଣ ଡରନ୍ତୁ ନାହିଁ, ଆମକୁ ଭବାନୀ ରକ୍ଷା କରିବେ। ଆମକୁ ଉତ୍ତର ପ୍ରାନ୍ତର ହିନ୍ଦୁ ସରଦାରଙ୍କ ମନୋଭାବ ଜାଣିବା ପାଇଁ ସୁଯୋଗ ମିଳିବ। ରାଜା ଜୟସିଂହ ଗୋବିନ୍ଦଦେବଙ୍କ ନାମରେ ପ୍ରତିଜ୍ଞା କରି କହିଲେ ଯେ ସେ ତାଙ୍କୁ ରକ୍ଷା କରିବେ। ସେ ତାଙ୍କ ପୁତ୍ର ରାମସିଂହକୁ ସମସ୍ତ କଥା ଲେଖି ଜଣାଇଦେଲେ। ୧୬୬୬ ମସିହା ମାର୍ଚ୍ଚ ୫ ତାରିଖ ଦିନ ନିଜର ୩୫୦ ଜଣ ସାଥୀଙ୍କ ସହିତ ମହାରାଜ ଏବଂ ୯ ବର୍ଷର ବାଳକ ଶମ୍ଭାଜୀ ରାୟଗଡ଼ରୁ ଆଗ୍ରା ଅଭିମୁଖରେ ଯାତ୍ରା କଲେ। ମେ ମାସ ୧୧ ତାରିଖରେ ଆଗ୍ରା ପହଞ୍ଚିଲେ। ପହଞ୍ଚିବାର ପରଦିନ ବାଦଶାହଙ୍କର ୫୦ ବର୍ଷ ପୂର୍ତ୍ତି ଜନ୍ମୋତ୍ସବ ଥିଲା। ଶିବାଜୀ ତାଙ୍କ ପୁତ୍ର ସହିତ ଦରବାର-ଏ-ଆମ୍‌କୁ ଗଲେ। ସହରର ଲୋକମାନେ ତାଙ୍କର ଜୟଧ୍ୱନି କରୁଥିଲେ। ମୁସଲମାନ ସିପାହୀମାନଙ୍କୁ ଲୋକମାନଙ୍କ ଜୟକାର ଧ୍ୱନି ଶ୍ରୁତିକଟୁ ହେଉଥିଲା।

ଦରବାରରେ ତାଙ୍କୁ ତିନିହଜାରୀ ସରଦାରଙ୍କ ମଧ୍ୟରେ ଠିଆ କରାଗଲା। ଔରଙ୍ଗଜେବ ତାଙ୍କୁ କୌଣସି ପ୍ରକାରେ ସମ୍ମାନ କଲେ ନାହିଁ କି ଅଭିବାଦନର ଉତ୍ତର ଦେଲେ ନାହିଁ। ଶିବାଜୀ କ୍ରୋଧରେ କମ୍ପିବାକୁ ଲାଗିଲେ। ସେ ପାଖରେ ଦଣ୍ଡାୟମାନ ରାମସିଂହକୁ ଗାଳିଗୁଲଜ କଲେ ଏବଂ ସଲାମ ନକରି ବାହାରକୁ ଚାଲି ଆସିଲେ।

ବାଦଶାହଙ୍କର ଏହା ଘୋର ଅପମାନ ଥିଲା। ସେ ତାଙ୍କର ସୈନିକମାନଙ୍କ ଦ୍ୱାରା ଶିବାଜୀଙ୍କୁ ଘେରାବନ୍ଦୀ କରିଦେଲେ। ଶିବାଜୀଙ୍କୁ ଜୀଜାମାତାଙ୍କର ଚେତାବନୀ ମନେ ପଡ଼ିଲା। ମାତ୍ର ସେ କଣ କରିପାରିବେ, ଏବେ ତ ପିଞ୍ଜରାବଦ୍ଧ।

ଯଦିଓ ଔରଙ୍ଗଜେବ ନିଜେ ଝଗଡା ବଢ଼ାଇବାକୁ ଚାହୁଁ ନଥିଲେ, ତଥାପି ତାଙ୍କର ଓଜୀର ଜାଫର ଖାଁ, ଯୋଧପୁର ରାଜା ଯଶୋବନ୍ତ ସିଂହ ଏବଂ

ଶାହଜାଦୀ ଜହାଁଆରା ସମସ୍ତେ ଶିବାଜୀଙ୍କୁ ମାରିଦେବାକୁ ଗ୍ୱହୁଁଥିଲେ । ସେଇମାନଙ୍କ ପରାମର୍ଶରେ ତାଙ୍କୁ ଆଗ୍ରାର ଥାନା ଅଧିକାରୀ ଅନ୍ଦାଜଖାଁଙ୍କର ଜିମା ଦେଇ ଦେଲେ । ପାଞ୍ଚହଜାର ପଠାଣ ସିପାହୀ ଗ୍ୱରିଆଡ଼େ ଘେରି ରହିଲେ ।

ରାମସିଂହଙ୍କୁ ଖବର ମିଳିଲା ଯେ ଯଥାଶୀଘ୍ର ଶିବାଜୀ ଏବଂ ଶମ୍ଭାଜୀଙ୍କୁ ହତ୍ୟା କରାଯିବ । ତାଙ୍କୁ ତାଙ୍କ ପିତାଙ୍କର ପ୍ରତିଜ୍ଞା କଥା ମନେ ପଡ଼ିଗଲା । ତେଣୁ ସେ ତାଙ୍କର କେତେକ ବିଶ୍ୱସ୍ତ ସୈନ୍ୟମାନଙ୍କୁ ଶିବାଜୀଙ୍କୁ ରଖା ଯାଇଥିବା ଘର ପାଖରେ ରଖିଦେଲେ ।

ଏଥିମଧ୍ୟରେ ଶିବାଜୀଙ୍କୁ ମାରି ସାରିବା କଥା–ମାତ୍ର ଔରଙ୍ଗଜେବ ରାଜା ଜୟସିଂହଙ୍କ ମନରେ ଆଘାତ ଦେବାକୁ ଗ୍ୱହୁଁ ନଥିଲେ । ଆଗ୍ରାର ହିନ୍ଦୁ ସୈନ୍ୟମାନେ ମଧ୍ୟ ଶିବାଜୀଙ୍କୁ ଆଦର କରୁଥିଲେ । ସେଥିପାଇଁ ଉପଯୁକ୍ତ ସୁଯୋଗ ଅପେକ୍ଷାରେ ଡେରି କରାଯାଇଥିଲା । ରାମସିଂହ ଶିବାଜୀଙ୍କ ସହିତ ମିଶୁଥିଲେ ମଧ୍ୟ ମନରେ ଅତ୍ୟନ୍ତ ଦୁଃଖୀ ଥିଲେ । ହେଲେ ମଧ୍ୟ ତାଙ୍କର କିଛି ଉପାୟ ନଥିଲା ।

ଗୋଟିଏ ମାସ ଜେଲଖାନାରେ କଟିଲା । ଗ୍ୱରିଆଡ଼େ କଡ଼ା ପହରା । କୌଣସି ରାସ୍ତା ଦେଖାଯାଉ ନଥିଲା, ମାତ୍ର ଏପରି ସଙ୍କଟ ସମୟରେ ତାଙ୍କର ଦମ୍ଭ ତଥା ଧୈର୍ଯ୍ୟ ଚ୍ୟୁତି ହୋଇ ନଥିଲା ।

ଜୁନ୍ ମାସ ୯ ତାରିଖରେ ନିଜ ସାଥିରେ ଆସିଥିବା ୩୫୦ ସୈନିକଙ୍କୁ ଦକ୍ଷିଣକୁ ପଠାଇବାକୁ ଅନୁମତି ଗ୍ୱହିଁଲେ । ଔରଙ୍ଗଜେବ ଏହାହିଁ ଗ୍ୱହୁଁଥିଲେ । ସମସ୍ତ ମରହଟ୍ଟା ସୈନ୍ୟ ପୂର୍ବଯୋଜନା ଅନୁସାରେ ଦକ୍ଷିଣକୁ ନଯାଇ ଲୁଚି ଛପି ଆଗ୍ରାର ବିଭିନ୍ନ ସ୍ଥାନରେ ରହିଲେ । ଏପାଖରେ ଶିବାଜୀଙ୍କୁ ହତ୍ୟା କରିବା ନିମିତ୍ତ ସମସ୍ତ ବ୍ୟବସ୍ଥା ପକ୍କା ହୋଇଗଲା ।

ରାମସିଂହଙ୍କୁ ଗୁପ୍ତଚରମାନଙ୍କ ଦ୍ୱାରା ସମସ୍ତ ଘଟଣା ଜଣାପଡ଼ିଲା । ସେ ତାଙ୍କର ପିତାଙ୍କୁ ବାଦଶାହଙ୍କର ବିଶ୍ୱାସଘାତକତା ବିଷୟରେ ସମସ୍ତ କଥା ଜଣାଇ ଦେଲେ । ଦିନେ ଶିବାଜୀ ତାଙ୍କୁ ଡାକି କହିଲେ, ତୁମେ ମୋର ଛୋଟ ଭାଇ ପରି । ମୁଁ ତୁମକୁ କୌଣସି ପ୍ରକାରେ ମୋଗଲମାନଙ୍କ ସହିତ ରଖିବାକୁ ଗ୍ୱହୁଁ ନାହିଁ । ବାଦଶାହକୁ କହି ତୁମେ ମୋର ସୁରକ୍ଷାର ଦାୟିତ୍ୱରୁ ଦୂରରେ ରୁହ । ମୁଁ ଯାହା ଠିକ୍ ମନେ କରିବି ତାହା କରିବି ।

ବର୍ଷାଋତୁ ଆସିଗଲା, ଜେଲରେ ଅଢ଼ାଇମାସ ବିତିଗଲା । ଶିବାଜୀ ଜାଣି ଜାଣି ନିଜକୁ ଅସୁସ୍ଥ ବୋଲି କହି ଶୋଇ ରହିଲେ । ବୈଦ୍ୟ ଆସିଲେ । ବାଦଶାହ ମନେ ମନେ ଖୁସି ହେଲେ ଯେ ଶିବା ନିଜେ ରୋଗରେ ମରିଯିବ, ହତ୍ୟା କରିବା ଦରକାର ପଡ଼ିବ ନାହିଁ ।

ଭାଦ୍ରବ ମାସ କୃଷ୍ଣପକ୍ଷ ଅଷ୍ଟମୀ ଦିନ ଶ୍ରୀକୃଷ୍ଣଙ୍କର ଜନ୍ମଦିନ । ଏଣୁ ମହାରାଜଙ୍କର ସ୍ୱାସ୍ଥ୍ୟ ଲାଭ ପାଇଁ ହିନ୍ଦୁ ମୁସଲମାନ ସମସ୍ତଙ୍କୁ ମିଠାଇ ଫଳ ଇତ୍ୟାଦି ବଣ୍ଟାଗଲା । ପ୍ରଥମେ ପ୍ରଥମେ ପଠାଯାଉଥିବା ମିଠାଇ ଟୋକେଇକୁ ଖୋଲି ପହରାଦାରମାନେ ଦେଖୁଥିଲେ, ଯେହେତୁ ଏପରି ବହୁ ସଂଖ୍ୟାରେ ମିଠାଇ ଟୋକେଇ ଆସୁଥିଲା, ପହରାଦାରମାନେ ଶେଷରେ ଆଉ ଯାଞ୍ଚ କଲେ ନାହିଁ । ସେଇ ଟୋକେଇ ଭିତରୁ ଗୋଟିକରେ ଶିବାଜୀ ଓ ଅନ୍ୟଟିରେ ଶମ୍ଭାଜୀ ପଶି ମୋଗଲମାନଙ୍କ ପହରା ସୀମାର ବାହାରକୁ ଚାଲିଗଲେ ।



ଘୋର ବର୍ଷା, ଅନ୍ଧକାର ରାତି । ସେ କଂସାସୁର ଔରଙ୍ଗଜେବଙ୍କର ଜେଲଖାନାରୁ ବାହାରି ଆସି ନିଜର ସୈନିକମାନଙ୍କ ସହିତ ମିଳିତ ହେଲେ । ଶିବାଜୀଙ୍କ ସ୍ଥାନରେ ତାଙ୍କର ନକଲୀ ହୀରୋଜୀ ଫରଜନ୍ଦେ ଚଦର ଘୋଡ଼େଇ ହୋଇ ଶୋଇଗଲା ।

ବାହାରକୁ ଆସି ଟହଲିଆ ମଦାରୀ ପହରାଦାରଙ୍କୁ କହିଲା, ମହାରାଜଙ୍କର

ଏହି ରାତିଟି ବୋଧହୁଏ ଶେଷ ରାତି । ମୁସଲମାନ ସରଦାର ଏବଂ ପହରାଦାର ଖୁସି ହେଲେ ଯେ ତାଙ୍କର କାମ ସରିଯିବ ।

ପରଦିନ ସକାଳେ ସବୁଦିନ ପରି ଫୌଲାଦ ଖାଁ ମହାରାଜଙ୍କ କୋଠରୀକୁ ଯାଇ ଦେଖନ୍ତି ତ ଶିବାଜୀ ଏବଂ ଶମ୍ଭାଜୀ ନାହାନ୍ତି । ଏକଥା ଅତ୍ୟନ୍ତ ଭୟଭୀତ ହୋଇ ଔରଙ୍ଗଜେବଙ୍କ ନିକଟକୁ ଯାଇ କହିବାରୁ ସେ ମୁଣ୍ଡରେ ହାତ ଦେଇଦେଲେ । ରାଗିଯାଇ ବହୁତ ଗାଳିଗୁଲଜ କଲେ ଏବଂ କହିଲେ, "ତୁମେମାନେ ସବୁ କାମ ବିଗାଡ଼ିଦେଲ । ସେ କଣ ମନ୍ତ୍ର ବଳରେ ଅଦୃଶ୍ୟ ହୋଇଗଲା ନା ମାଛି ହୋଇ ଉଡ଼ିଗଲା? ଯେପର୍ଯ୍ୟନ୍ତ ଶିବାଜୀକୁ ଧରି ନ ଆଣିଛ, ମୋତେ ତୁମର ମୁହଁ ଦେଖାଇବ ନାହିଁ ।"

ଅବଶ୍ୟ ରାମସିଂହଙ୍କର ମନସବେଦାର ପଦ ଆଉ ନଥିଲା, ତଥାପି ସେ ଅତ୍ୟନ୍ତ ଆନନ୍ଦିତ ଥିଲେ ଯେ ତାଙ୍କ ପିତାଙ୍କର ପ୍ରତିଜ୍ଞା ରକ୍ଷା ହେଲା ।

ଏହାପରେ ମୋଗଲ ସୈନ୍ୟମାନେ ଘୋଡ଼ାରେ ଚଢ଼ି ଶିବାଜୀଙ୍କୁ ଧରିବାକୁ ବାହାରିଲେ ।

ତେଣେ ଶିବାଜୀ ନିଶଦାଢ଼ି କାଟି ସାଧୁ ବେଶ ଧାରଣ କଲେ । ଶମ୍ଭାଜୀକୁ ମଥୁରାର ଏକ ବିଶ୍ୱସ୍ତ ମରହଟ୍ଟା ପରିବାର ନିକଟରେ ଛାଡ଼ି କାଶୀ ଅଭିମୁଖେ ଯାତ୍ରା କଲେ । ପୁଣି ସେଠାରୁ ବିନା ବିଶ୍ରାମରେ ରାୟଗଡ଼ରେ ୨୫ ଦିନ ପରେ ପହଞ୍ଚିଲେ । ମାଆ ଜୀଜାବାଈଙ୍କୁ ଖବର ମିଳିଲା ଯେ କାଶୀର କେତେ ଜଣ ସାଧୁ ମହାତ୍ମା ମାଆଙ୍କୁ ଦେଖିବାକୁ ଅଡ଼ି ବସିଛନ୍ତି ।

ମହଲ ମଧ୍ୟରେ ପ୍ରବେଶ କଲା ପରେ ସେମାନଙ୍କ ମଧ୍ୟରୁ ଜଣେ ସାଧୁ ମାଆଙ୍କ ପାଦତଳେ ପଡ଼ିଗଲେ । ମାଆ କିଛି ସମୟ ପାଇଁ ଧର୍ମସଙ୍କଟରେ ପଡ଼ିଗଲେ, ମାତ୍ର ଯେକୌଣସି ବେଶରେ ହେଉ ପୁଅ ତ ଚିହ୍ନି ହୋଇଯିବ । ମାତା-ପୁତ୍ର ଆଲିଙ୍ଗନବଦ୍ଧ ହେଲେ । ମାତାଙ୍କ ଚକ୍ଷୁରୁ ଆନନ୍ଦାଶ୍ରୁ ଝରିଆସିଲା । ଶମ୍ଭାଜୀ କିଛି ଦିନ ପରେ ଜଣେ ବିଶ୍ୱସ୍ତ ଲୋକ ସହିତ ରାୟଗଡ଼ରେ ଆସି ପହଞ୍ଚିଲେ । ଔରଙ୍ଗଜେବଙ୍କ ମନରେ ମରିବା ପର୍ଯ୍ୟନ୍ତ ଏକଥା ରହିଲା କି ପିଞ୍ଜରାରୁ ସିଂହ ପଳାଇଲା ।



# ସିଂହଗଡ଼ ବିଜୟ

**ଖଡ଼େ ସିଂହଗଢକେ ଅଜୟ, ୟେ ଗର୍ବିତ କଂଗୂର ।**
**ଶିବ୍‌ବା ବେଟା ଜଗତ ମେଁ, ବୃଥା କହାୟା ଶୂର ॥**

ମାତା ଜୀଜାବାଈ ଶିବାଜୀଙ୍କୁ ଏ ଯେଉଁ କଥା କହିଥିଲେ, ଯଦି ଅନ୍ୟ କେହି କହି ଥାଆନ୍ତା, ତାର ଜିଭ କାଟି ଦିଆଯାଇଥାନ୍ତା । ମାତ୍ର ଦେବୀ ସ୍ୱରୂପା ମାଆ ସ୍ୱୟଂ କହିଥିଲେ । ସେ ଶିବାଜୀଙ୍କର ପୂଜ୍ୟ ମାତା ବ୍ୟତୀତ ତାଙ୍କର ପରାମର୍ଶଦାତ୍ରୀ ଓ ଶିକ୍ଷୟିତ୍ରୀ ମଧ୍ୟ ଥିଲେ ।

ଶିବାଜୀ ଜଂଜିରାରେ ଏକ ବଡ଼ ଅଭିଯାନରୁ ଲେଉଟିଥାନ୍ତି । କ୍ଳାନ୍ତ ହୋଇ ପଡ଼ିଥାନ୍ତି । ସେଠାରୁ ଆସି ଯେତେବେଳେ ମାଆଙ୍କର ପାଦ ତଳେ ପ୍ରଣାମ କଲେ, ମାଆ ଏକଥା କହିଦେଲେ । ତାଙ୍କ ବିଜୟର ଗର୍ବ କୁଆଡ଼େ ଉଭେଇ ଗଲା, ଶିବାଜୀଙ୍କ ମୁଖମଣ୍ଡଳରେ ଖେଳିଗଲା ଅବସାଦର ଛାୟା ।

କଥା କଣ କି–ଜୀଜାବାଈ ଯେତେବେଳେ ଭବାନୀଙ୍କ ମନ୍ଦିରକୁ ପୂଜା କରିବାକୁ ଯାଉଥିଲେ, ତାଙ୍କୁ ସମ୍ମୁଖରେ ସିଂହଗଡ଼ର ସୁଉଚ୍ଚ କିଲ୍ଲା ଦିଶୁଥିଲା । ପୂର୍ବେ ଏହା ତାଙ୍କର ପୁତ୍ର ଶିବାଜୀଙ୍କର ଥିଲା । ଏହି ସିଂହଗଡ଼ ପୁରନ୍ଦରଠାରେ ସନ୍ଧିରେ ମୋଗଲଙ୍କୁ ହସ୍ତାନ୍ତର କରିବାକୁ ପଡ଼ିଥିଲା । ଏଥିପାଇଁ ଚ୍ୱରିବର୍ଷ ଧରି ତାଙ୍କର ମନରେ ବିମର୍ଷ ଭାବ ରହୁଥିଲା । ଅନେକ ଥର ଶିବାଜୀଙ୍କ ମନରେ ସିଂହଗଡ଼କୁ ପୁନଃ ଅଧିକାର କରିବାକୁ ଇଚ୍ଛା ହେଉଥିଲା, କିନ୍ତୁ ସେ ସୁଯୋଗ ପାଉ ନଥିଲେ ।

ଔରଙ୍ଗଜେବ କିଲ୍ଲାର ସୁରକ୍ଷା ନିମିତ୍ତ ଏକ ଅଜେୟ ରାଜପୁତ ବୀର ଉଦୟଭାନୁଙ୍କୁ ବହୁସଂଖ୍ୟକ ସୈନିକ ସହିତ ସେଠାରେ ଅବସ୍ଥାପିତ କରିଥିଲେ । କିଲ୍ଲାଟି ଏପରି ଥିଲା ଯେ ତା ଉପରକୁ ମଣିଷ କଣ କୌଣସି ସରୀସୃପ ମଧ୍ୟ ଉଠିପାରିବ ନାହିଁ ।

ମହାରାଜଙ୍କର ବାମଚକ୍ଷୁ ସ୍ଫୁରିତ ହେଉଥିଲା ଏବଂ ଅଶୁଭ ସଙ୍କେତ ମିଳୁଥିଲା । ହେଲେ ମଧ୍ୟ ମାଆଙ୍କର ଇଚ୍ଛା ଆଗରେ ଅନ୍ୟ ଚ୍ୱରା ନଥିଲା । ଶିବାଜୀ ତାଙ୍କର ସର୍ବୋଚ୍ଚ ସେନାପତି ଏବଂ ମିତ୍ର ତାନାଜୀ ମାଲସୁରେଙ୍କ ଗ୍ରାମକୁ ଖବର ପଠାଇଲେ ଯେ ସବୁ କାମ ଛାଡ଼ି ସିଂହଗଡ଼ର କିଲ୍ଲା ପୁନର୍ଦଖଲ

କରିବାକୁ ଆସନ୍ତୁ । ସେଦିନ ତାନାଜୀଙ୍କ ଏକମାତ୍ର ପୁତ୍ରର ବିଭାଘର ଥିବାରୁ ତାଙ୍କର ଘର ବନ୍ଧୁବାନ୍ଧବରେ ଭରପୁର ଥିଲା । ଶାହାନାଇ ବାଦ୍ୟ ସହିତ ମଙ୍ଗଳ ଗୀତ ଗାନ ହେଉଥିଲା । ହେଲେ ମଧ୍ୟ ତାନାଜୀ ଖବର ପାଇଲା ମାତ୍ରେ ତାଙ୍କର ଏକହଜାର ଅଶ୍ୱାରୋହୀ ସୈନିକଙ୍କ ସହିତ ସିଂହଗଡ଼ ଯାତ୍ରା ପାଇଁ ପ୍ରସ୍ତୁତ ହେଲେ । ଘରେ ସମସ୍ତେ ଦୁଃଖୀ ହୋଇଗଲେ । ତାଙ୍କର ସ୍ତ୍ରୀ କହିଲେ, ବିଭାଘର ସାରି ଦେଇ ଆପଣ ଯିବେ । ଦୁଇଚାରି ଦିନର କଥା । କିନ୍ତୁ ଆପଣ ଏମିତି ହଠାତ୍ ଗଲେ ଆମର ଅତିଥିମାନେ ଅପମାନ ବୋଧ କରିବେ ଏବଂ ବିଭାଘର ଫିକା ପଡ଼ିଯିବ ।

ତାନାଜୀ ଉତ୍ତରରେ କହିଲେ, "ମହାରାଜଙ୍କର ମୋ ଉପରେ ଅତୁଟ ଆସ୍ଥା । ଯଦି ଏହି କାମ ପାଇଁ ସେ ମୋତେ ଭାର ଦେଇଛନ୍ତି ମୁଁ କ୍ଷଣେମାତ୍ର ଏଠାରେ ରହିପାରିବି ନାହିଁ । ତମେ କାମ ସମ୍ଭାଳ । ସାନଭାଇ ତ ଅଛି, ମୁଁ ତୁରନ୍ତ ସିଂହଗଡ଼ ଜୟ କରି ଫେରି ଆସିବି ।"

ଯେତେବେଳେ ବିଦାୟର ବେଳ ଆସିଲା ସେତେବେଳକୁ ସାନଭାଇ ସୂର୍ଯ୍ୟଜୀ ବେଶଭୂଷା ହୋଇ ଯିବାକୁ ପ୍ରସ୍ତୁତ ହୋଇ ସାରିଥିଲା । ସେ ଭାବିଲା, ଏତେ ଦିନ ପର୍ଯ୍ୟନ୍ତ ଯେଉଁ ଅଜେୟ କିଲ୍ଲାକୁ ମହାରାଜ ସ୍ୱୟଂ ପୁନଃ ଅଧିକାର କରିବାକୁ ସାହସ କରି ନଥିଲେ, ତାକୁ ପାଇବା ଏତେ ସହଜ କଥା ନୁହେଁ । ଭାଇ ମୋର ମରାଠା ସେନାର ସର୍ବୋଚ୍ଚ ସେନାପତି । ତାଙ୍କ ଜୀବନ ବହୁତ ମୂଲ୍ୟବାନ୍ । ଏଭଳି ବିପଦ ସମୟରେ ମୋତେ ତାଙ୍କ ସାଙ୍ଗରେ ରହିବା ଜରୁରୀ । ତାନାଜୀ ତାକୁ ଯେତେ ବୁଝାଇଲେ ମଧ୍ୟ ସେ ଯିବାକୁ ଜିଦି ଧରିଲା । ଶେଷକୁ ତାକୁ ସାଙ୍ଗରେ ନେବାକୁ ପଡ଼ିଲା ।

ଘନାନ୍ଧକାର ରାତି । ନିଜର ହାତ ମଧ୍ୟ ଦେଖାଯାଉ ନଥିଲା, ମାତ୍ର ସୈନ୍ୟମାନଙ୍କୁ ପରିଚିତ ରାସ୍ତାରେ ଧୀରେ ଧୀରେ ଅଗ୍ରସର ହେବାକୁ ପଡ଼ିଲା । ମନରେ ଅଦମ୍ୟ ଉତ୍ସାହ ଥିଲା ଯେ ଆଜି ଆମର ହାତଛଡ଼ା ହୋଇଥିବା କିଲ୍ଲାକୁ ଆମେ ଫେରିପାଇବୁ ଏବଂ ଅପମାନର କାଳିମାକୁ ଅପସାରିତ କରିବୁ । ସମସ୍ତେ ସୁଉଚ୍ଚ କିଲ୍ଲାର ନିମ୍ନ ଦେଶରେ ପହଞ୍ଚିଲେ । ମାତ୍ର ତା ମଧ୍ୟରେ ପ୍ରବେଶ କରିବାର ଉପାୟ ନଥିଲା । ଯଦି ୧୦/୨୦ ଜଣ ସିପାହୀ ପହଞ୍ଚିଯାଆନ୍ତି ଏବଂ କିଲାର ଫାଟକ ଖୋଲି ଦିଆଯାଏ, ତେବେ ସାମନା ସାମନି ଯୁଦ୍ଧ ଲାଗିଯିବାର ଭୟ ଅଛି ।

ତାନାଜୀଙ୍କ ନିକଟରେ ଯଶୋବନ୍ତୀ ନାମ୍ନୀ ଏକ ପ୍ରକାରର ଗୋଧି ଜାତୀୟ ପ୍ରାଣୀ ଥିଲା, ତାକୁ ସେ ଝିଅ ପରି ଅତି ସ୍ନେହରେ ପାଳିଥିଲେ । ତାକୁ ବୁଜୁଳା କରି କିଲ୍ଲାର ପାଚେରୀ ଉପରକୁ ଚଢ଼ିବା ପାଇଁ ଫିଙ୍ଗିଦେଲେ । ମାତ୍ର ସେ ବାରମ୍ବାର ତଳକୁ ଫେରି ଆସୁଥିଲା । ତାନାଜୀ ସ୍ନେହରେ ଆଉଁସି ଆଉଁସି କହିଲେ–"ଝିଅ! ଏଇଟା ମୋର ଇଜ୍ଜତର କଥା । ତୁ ଆଜି ପର୍ଯ୍ୟନ୍ତ ମୋର ଆଦେଶ ପାଳନ କରିଆସିଛୁ । ମୋତେ ଏହି ସଂକଟ ସମୟରେ ହଇରାଣ କରନା ।"

ଏଥର ସେ କିଲା ଉପରେ ଯାଇ ଗ୍ରିପି ହୋଇ ରହିଲା । ତା ଆଶ୍ରୟରେ ସର୍ବପ୍ରଥମେ ତାନାଜୀ ସ୍ୱୟଂ ଉପରକୁ ଉଠିବାକୁ ଲାଗିଲେ । ସିପାହୀମାନେ



ତାଙ୍କୁ କହିଲେ, ଉପରେ ପହରାଦାର ଥିବେ । ଆପଣଙ୍କ ନିମିତ୍ତ ବିପଦ ଅଛି । ତେଣୁ ଆମେ ପ୍ରଥମେ ଯାଇ ପରେ ଆପଣଙ୍କୁ ଡାକିବୁ । କିନ୍ତୁ ମରହଟ୍ଟା ସରଦାରଙ୍କର ନିୟମ ଥିଲା ଯେ ସେ ସଙ୍କଟ ସମୟରେ ସବୁବେଳେ ଆଗରେ ରହନ୍ତି ଏବଂ ଏହି କାରଣରୁ ସୈନ୍ୟମାନେ ତାଙ୍କ ନିମିତ୍ତ ପ୍ରାଣ ଦେବାକୁ ପ୍ରସ୍ତୁତ ରହିଆନ୍ତି ।

ଉପରକୁ ଉଠି ସେଠାରେ ଏକ ଖମ୍ବରେ ଶକ୍ତ ରସି ବାନ୍ଧି ଦିଆଗଲା । ଧୀରେ ଧୀରେ ଅନେକ ସୈନିକ ଉପରକୁ ଉଠିଗଲେ ।

କିଲା ମଧ୍ୟରେ ପ୍ରହରୀଙ୍କର ପୂର୍ଣ୍ଣ ବନ୍ଦୋବସ୍ତ ଥିଲା । ଅତ୍ୟନ୍ତ ସାବଧାନତାପୂର୍ବକ ଏସବୁ କରୁଥିଲେ ମଧ୍ୟ ପ୍ରହରୀମାନେ ଏକଥା ଜାଣିପାରି ବିପଦ ଘଣ୍ଟି ବଜାଇଦେଲେ । ଗ୍ରିପଟ୍ଟୁ ରାଜପୁତ ଓ ମୋଗଲ ସୈନ୍ୟମାନେ ଅଳ୍ପସଂଖ୍ୟକ ମରାଠା ସୈନ୍ୟଙ୍କୁ ଘେରିଗଲେ । ଦୈତ୍ୟସମ ବପୁବିଶିଷ୍ଟ ଦୁର୍ଗାଧ୍ୟକ୍ଷ ଉଦୟଭାନୁ ବିରାଟ ଖଣ୍ଡା ଧରି ବାହାରି ପଡ଼ିଲା । ତାର ଶକ୍ତି ବିଷୟରେ ସାରା ମହାରାଷ୍ଟ୍ରରେ ପ୍ରଗ୍ୱରିତ ଥିଲା ।

ତାନାଜୀ ଭାବିଲେ, ମହାରାଜ ଯେତେବେଳେ ଅଫଜଲ ଖାଁ ପରି ରାକ୍ଷସକୁ ମାରିଥିଲେ ମୁଁ କାହିଁକି ଏହି ଧର୍ମଦ୍ରୋହୀକୁ ହତ୍ୟା କରି ଯଶସ୍ୱୀ ହେବି ନାହିଁ?

ଦୁଇ ବୀର ଖଣ୍ଡା ଧରି ଅନେକ ସମୟ ପର୍ଯ୍ୟନ୍ତ ଯୁଦ୍ଧ କଲେ । ଦୁହେଁ ଥକିଗଲେ । ମାତ୍ର ତାନାଜୀ ନିଜର ଜୀବନକୁ ପାଣି ଛଡ଼ାଇ ଲଢୁଥିଲେ । ଶେଷରେ ଉଦୟଭାନୁ ଖଣ୍ଡା ଗ୍ୱେଟରେ ବେହୋସ ହୋଇ ପଡ଼ିଗଲା । ତାକୁ ବେହୋସ ହୋଇ ପଡ଼ିବା ଦେଖି ଉଦୟଭାନୁର ଅଙ୍ଗରକ୍ଷକ ତାନାଜୀଙ୍କୁ ପଛପଟରୁ ଖଣ୍ଡାରେ ହାଣିଦେଲା । ଦୁଇଜଣ ଏକାବେଳକେ ପ୍ରାଣଶୂନ୍ୟ ହୋଇ ଟଳିପଡ଼ିଲେ । ବହୁବର୍ଷର ବୈରତାର ସମାପ୍ତି ଘଟିଲା ।

ସେନାପତିଙ୍କ ମୃତ୍ୟୁରେ ଅଳ୍ପସଂଖ୍ୟକ ମରହଟ୍ଟା ସୈନ୍ୟ ଭୟଭୀତ ହୋଇ ପଡ଼ିଲେ । ସେମାନେ ଅସ୍ତ୍ରଶସ୍ତ୍ର ତ୍ୟାଗ କରି ଆତ୍ମସମର୍ପଣ କରିବାକୁ ଚିନ୍ତା କରୁଥିଲେ । ଏତିକି ବେଳେ ସୂର୍ଯ୍ୟଜୀ ଚିତ୍କାର କରି କହିଲେ, "ହେ ବୀର ଯୋଦ୍ଧାଗଣ! ଭାଇ ତ ଫେରିବେ ନାହିଁ । ତେବେ ତୁମମାନଙ୍କର ଯଦି ତାଙ୍କ ପ୍ରତି ତିଳେମାତ୍ର ଶ୍ରଦ୍ଧା ଥାଏ, ତେବେ ପ୍ରାଣମୂର୍ଚ୍ଛା ସେମାନଙ୍କର ସମ୍ମୁଖୀନ ହୁଅ । ଏପରି ସୁଯୋଗ ଆଉ ମିଳିବ ନାହିଁ । ଆଗକୁ ଯାଅ ବା ପଛକୁ ଫେର, ମରିବା ନିଶ୍ଚିତ; କାରଣ କିଲାରୁ ଓହ୍ଲାଇବାର ରସି କାଟି ଦିଆଯାଇଛି । ତେଣୁ କାପୁରୁଷ ଭଳି ମରି ମହାରାଜ ଏବଂ ଭାଇଙ୍କ ନାମରେ କଳଙ୍କ ଲଗାନା ।"

ଥକି ଯାଇଥିବା ମରହଟ୍ଟା ସୈନ୍ୟଙ୍କର ଦ୍ୱିଗୁଣିତ ବଳ ଆସିଗଲା ।

ସେମାନେ ଜୋର୍‌ରେ ଆକ୍ରମଣ କଲେ । ସେମାନେ ଭାବିଲେ, କୌଣସି ପ୍ରକାରେ ଫାଟକକୁ ଖୋଲିଦେଲେ ବାହାରେ ରହିଥିବା ସୈନ୍ୟମାନଙ୍କୁ ଭିତରେ ପ୍ରବେଶ କରିବାକୁ ସୁବିଧା ହୋଇଯିବ ।

ମୋଗଲ ଏବଂ ରାଜପୁତ ସୈନ୍ୟମାନେ ମଧ୍ୟ ସେମାନଙ୍କ ସେନାପତିଙ୍କ ମୃତ୍ୟୁରେ ଭୟଭୀତ ହୋଇ ପଡ଼ିଥିଲେ । ସେମାନେ ମରହଟ୍ଟା ସୈନ୍ୟଙ୍କ ଖଣ୍ଡା ଓ ଭାଲା ସାମନାରେ ତିଷ୍ଠି ପାରିଲେ ନାହିଁ । ଫାଟକ ଖୋଲିଗଲା । ବାକି ବାହାରେ ରହିଥିବା ୫୦୦ ମରହଟ୍ଟା ବୀର ହରହର ମହାଦେବ ରଡ଼ିରେ ଭିତରେ ପଶିଗଲେ । ଶତ୍ରୁପକ୍ଷର ସୈନ୍ୟମାନେ ଅସ୍ତ୍ରଶସ୍ତ୍ର ତ୍ୟାଗ କରି ଶରଣାପନ୍ନ ହେଲେ ।

ଏ ଖବର ଶିବାଜୀ ମହାରାଜଙ୍କ ନିକଟକୁ ରାୟଗଡ଼ ପଠାଗଲା । ସେ ପ୍ରତୀକ୍ଷାରେ ଥିଲେ । ସାରା ସମ୍ବାଦ ଶୁଣି ତାଙ୍କ ଚକ୍ଷୁର ଲୋତକ ଝରି ପଡ଼ିଲା । ସେ ଭାବିବାକୁ ଲାଗିଲେ, 'ବହୁତ ମହଙ୍ଗା ପଡ଼ିଲା ଏ ବିଜୟ' ।

ମାଆଙ୍କ ନିକଟକୁ ଯାଇ ପ୍ରଣାମ କରି କହିଲେ–"ମାଆ! ଗଡ଼ ଜିତିଲି, ମାତ୍ର ସିଂହକୁ ହରାଇଲି ।"



# ରଖେ ହରି ତ ମାରେ କିଏ ?

୧୮୫୭ ଖ୍ରୀଷ୍ଟାବ୍ଦର କଥା । ଜୟରାମବାଟୀ ଗ୍ରାମର ରାମଚନ୍ଦ୍ର ମୁଖାର୍ଜୀଙ୍କର କନ୍ୟା ସାରଦାଙ୍କର ବିବାହ ପାଞ୍ଚବର୍ଷ ବୟସରେ ନିକଟବର୍ତ୍ତୀ କାମାରପୁକୁର ଗ୍ରାମର ତେଇଶ ବର୍ଷ ବୟସର ଯୁବକ ଗଦାଧରଙ୍କ ସହିତ ହୋଇଥିଲା । ସେହି ସମୟରେ କୁଳୀନ ବ୍ରାହ୍ମଣ ପରିବାରରେ ଏହି ପ୍ରକାର ବେମେଳ ବିବାହ ପ୍ରାୟତଃ ଘଟୁଥିଲା ।

ବର ଏବଂ କନ୍ୟା ପରିବାର ଗରିବ ଥିବାରୁ ବିବାହ ଖୁବ୍ ଧୁମଧାମରେ ନ ହୋଇ ସାଧାରଣ ଭାବରେ ସମ୍ପନ୍ନ ହୋଇଥିଲା । ଗଦାଧରଙ୍କର ମାତା ଚନ୍ଦ୍ରାଦେବୀ ଏବଂ ତାଙ୍କର ବଡ଼ ଭାଇ ରାମକୁମାର ଧାର-ଉଧାର କରି ଗ୍ରାମର ସମସ୍ତ ଜନ ସାଧାରଣଙ୍କୁ ନିମନ୍ତ୍ରଣ କରି ଭୋଜିଭାତ ଖୁଆଇ ଥିଲେ । ବାଳିକା ବଧୂ ସାରଦା ଅଳ୍ପ କେତୋଟି ଦିନ ଶାଶୁଘରେ ରହି ପୁଣି ନିଜ ମାତାପିତାଙ୍କ ଗୃହକୁ ପ୍ରତ୍ୟାବର୍ତ୍ତନ କରିଥିଲେ ।

ଗଦାଧର କାମାରପୁକୁର ଗ୍ରାମରୁ କଲିକତାକୁ ଫେରି ଆସିଲେ ଏବଂ ରାଣୀ ରାସମଣୀଙ୍କ ଦକ୍ଷିଣେଶ୍ୱରଠାରେ ଥିବା କାଳିମନ୍ଦିରରେ ପୂଜାରୀ ପଦରେ ନିଯୁକ୍ତ ହେଲେ ।

ଏଥିମଧ୍ୟରେ ଦୀର୍ଘ ସତର ବର୍ଷ ବିତିଗଲା । ବାଳିକା ସାରଦା ଏବେ ବାଇଶି ବର୍ଷର ପୂର୍ଣ୍ଣ ଯୌବନା ନାରୀ । ସେ ଏହି ସମୟ ମଧ୍ୟରେ କେତେଥର କାମାରପୁକୁର ଯାଇ ତାଙ୍କ ଶାଶୁଙ୍କ ପାଖରେ ରହି ଆସିଥିଲେ, ଦୁଇଥର ଦକ୍ଷିଣେଶ୍ୱରରେ ପତିଙ୍କୁ ଦର୍ଶନ କରି ଆସିଥିଲେ । ତଥାପି ଅଧିକାଂଶ ସମୟ ଜୟରାମବାଟୀରେ କଟାଉ ଥିଲେ ।

ଗଦାଧର କାଳୀ ମନ୍ଦିରରେ ପୂଜା କରିବା ସମୟରେ ସମାଧିସ୍ଥ ହୋଇଯାଉଥିଲେ । କେତେବେଳେ ସେ ପାଗଳଙ୍କ ପରି ଜୋରରେ ହସୁଥିଲେ ତ କେତେବେଳେ କାନ୍ଦୁଥିଲେ ଅଥବା ନାଚୁଥିଲେ ।

ଏହି ଖବର ଜୟରାମବାଟୀରେ ପହଞ୍ଚିଲା । ଲୋକମାନେ ପରନିନ୍ଦା ପରଚର୍ଚ୍ଚା କରି ଆନନ୍ଦ ପାଆନ୍ତି । ଗ୍ରାମର କିଛି ସ୍ତ୍ରୀଲୋକ ସାରଦାଙ୍କ ମାଆଙ୍କ ପାଖକୁ ଆସି କହିଲେ, ‘‘ଝିଅ ସାରଦାକୁ ଭଗବାନ ଏତେ ରୂପ ଓ ଗୁଣ ଦେଇଛନ୍ତି, ହେଲେ କଅଣ ହେବ! ଦୁର୍ଭାଗ୍ୟକୁ ତାର ସ୍ୱାମୀ ପାଗଳ । ଆମେ

ତ ପୂର୍ବରୁ ଏକଥା ଜାଣିଥିଲୁ, କିନ୍ତୁ ତୁମେ କାଳେ ଖରାପ ଭାବିବ ଜାଣି ଆମେ ଚୁପ ହୋଇ ରହିଥିଲୁ।''

ସାରଦା ମନେ ମନେ ଜାଣିଥିଲେ ଯେ ତାଙ୍କର ସ୍ୱାମୀ ପାଗଳ ନୁହଁନ୍ତି, ବରଂ ଜଣେ ଉଚ୍ଚକୋଟୀର ମହାପୁରୁଷ; କିନ୍ତୁ ସେମାନଙ୍କ ସହିତ ତର୍କ ନ କରି ସେ ଦୁଃଖୀ ହୋଇ ଚୁପ୍ ରହୁଥିଲେ। ଶୋକ ଏବଂ ଦୁଃଖରେ ତାଙ୍କର ସ୍ୱାସ୍ଥ୍ୟ ଖରାପ ହେବାକୁ ଲାଗିଲା।

ଦିନକର କଥା। ଗ୍ରାମର ଦଳେ ଲୋକ ଗଙ୍ଗାସ୍ନାନ କରିବା ପାଇଁ କଲିକତା ଯାଉଥିଲେ। ସାରଦା ସେମାନଙ୍କ ସହିତ ଦକ୍ଷିଣେଶ୍ୱର ଯିବା ପାଇଁ ମନସ୍ଥ କରି ନିଜ ପିତା-ମାତାଙ୍କଠାରୁ ଅନୁମତି ଚାହିଁଲେ। ତାଙ୍କର ପିତା ଝିଅର ଦୁଃଖ ବୁଝିପାରି ଥିଲେ। ସାରଦା ଗ୍ରାମବାସୀଙ୍କ ସହିତ ଦକ୍ଷିଣେଶ୍ୱର ଯିବା ପାଇଁ ବାହାରିଲେ।

ଜୟରାମବାଟୀରୁ କଲିକତାର ଦୂରତା ପ୍ରାୟ ଷାଠିଏ ମାଇଲ୍। ପଥ ଅତ୍ୟନ୍ତ ଦୁର୍ଗମ ଏବଂ କଣ୍ଟକିତ। ତାଙ୍କ ଗ୍ରାମରୁ କୋଡ଼ିଏ ମାଇଲ୍ ପରେ ତେଲୋଭେଲୋ ନାମରେ ଗୋଟିଏ ଗ୍ରାମ ପଡ଼େ। ସେଠାରେ ଘଞ୍ଚ ଅରଣ୍ୟ ଥିଲା। ସେଠାକାର କିଛି ଡାକୁ ଯାତ୍ରୀମାନଙ୍କ ନିକଟରୁ ଖାଦ୍ୟ ଓ ବସ୍ତ୍ର ପାଇବା ଉଦ୍ଦେଶ୍ୟରେ ସେମାନଙ୍କର ଜୀବନ ନେବା ପାଇଁ ମଧ୍ୟ ପଶ୍ଚାତ୍‌ପଦ ହେଉ ନଥିଲେ।

ସାରଦା ତଥା ଗ୍ରାମବାସୀମାନେ ସନ୍ଧ୍ୟା ପୂର୍ବରୁ ତେଲୋଭେଲୋ ପାର କରି ତାରକେଶ୍ୱର ପହଞ୍ଚିବା ପାଇଁ ଚାହୁଁଥିଲେ, ସେଥିପାଇଁ ଶୀଘ୍ର ଶୀଘ୍ର ଚାଲିବାକୁ ଲାଗିଲେ। କିନ୍ତୁ ରାସ୍ତାରେ ସାରଦାଙ୍କର ଗୋଡ଼ ମୋଡ଼ି ହୋଇଗଲା, ପୁଣି ଅଳ୍ପଦିନ ପୂର୍ବରୁ ରୋଗରୁ ଉଠିଥିବାରୁ, ଦୁର୍ବଳତା କାରଣରୁ ସେ ଅନ୍ୟମାନଙ୍କ ସହିତ ତାଳ ଦେଇ ଚାଲି ପାରିଲେ ନାହିଁ।

ରାତ୍ରି ହେବା ପାଇଁ ମାତ୍ର ଦୁଇ ଘଡ଼ି ବାକି ରହିଲା, କିନ୍ତୁ ଆଠ-ଦଶ ମାଇଲ୍ ରାସ୍ତା ଚାଲିବାକୁ ଅଛି। ତେଣୁ ସାରଦା ସହଯାତ୍ରୀମାନଙ୍କୁ କହିଲେ, ''ମୋ ପାଇଁ ଆପଣମାନେ ନିଜ ନିଜ ଜୀବନକୁ କାହିଁକି ବାଜି ଲଗାଉଛନ୍ତି? ଆପଣମାନେ ଆଗେ ଆଗେ ଚାଲନ୍ତୁ ଏବଂ ତାରକେଶ୍ୱର ମନ୍ଦିରକୁ ଯାଇ ବିଶ୍ରାମ କରନ୍ତୁ, ମୁଁ ଧୀରେ ଧୀରେ ଯାଇ ସେଠାରେ ପହଞ୍ଚିଯିବି।''

ସମସ୍ତେ ଟିକିଏ ହେଞ୍ଚିପାଞ୍ଚି ହେଲେ, କିନ୍ତୁ ଭୟଙ୍କର ଡାକୁମାନଙ୍କ

ଭୟରେ ସେମାନେ ଘଞ୍ଚ ଜଙ୍ଗଲ ପଥରେ ସାରଦାଙ୍କୁ ଛାଡ଼ି ଚ୍ୱଲିବାକୁ ଲାଗିଲେ। ସାରଦା ତେଲୋଭେଲୋ ଜଙ୍ଗଲପଥରେ ପହଞ୍ଚିଲା ବେଳକୁ ରାତି ହୋଇ ଯାଇଥିଲା। ବର୍ଷା ହେବାକୁ ଲାଗିଲା। ଗୋଟିଏ ଗଛମୂଳେ ସେ ଦୁଃଖରେ ବସିପଡ଼ି ଭାବିବାକୁ ଲାଗିଲେ, ବୋଧହୁଏ ଏ ଜୀବନରେ ଦକ୍ଷିଣେଶ୍ୱରରେ ପହଞ୍ଚି ସେ ନିଜ ସ୍ୱାମୀଙ୍କ ଦର୍ଶନ ଲାଭ କରିପାରିବେ ନାହିଁ।

ଏତିକିବେଳେ ତିନିଚ୍ୱରି ଜଣ ଡାକୁ ଆସି ସେଠାରେ ପହଞ୍ଚିଲେ। ଜଣେ ଗମ୍ଭୀର ସ୍ୱରରେ ପଚ୍ୱରିଲା, ''ତୁମ ସାଥିରେ ଯେଉଁମାନେ ଥିଲେ କୁଆଡ଼େ ଗଲେ?''

ସାରଦା ସବୁକଥା କହିବା ପରେ ନିଜ ପାଖରେ ଥିବା ସ୍ୱଳ୍ପ ପଇସା ଓ ଲୁଗା ଡାକୁଙ୍କ ସାମ୍ନାରେ ରଖିଦେଲେ। ଡାକୁମାନେ ପାଖକୁ ଆସି ମଶାଲ ଆଲୁଅରେ ଦେଖିଲେ ଯେ ଜଣେ ଅତ୍ୟନ୍ତ ରୂପସୀ ଯୁବତୀ ଥଣ୍ଡା, ଭୟ ଏବଂ ଅସୁସ୍ଥତା କାରଣରୁ କମ୍ପୁଛି। ତାଙ୍କ ସରଦାର ପଚ୍ୱରିଲା, ''ତୁମେ କିଏ, କେଉଁଠାରୁ ଆସିଛ ଏବଂ କେଉଁଠିକୁ ଯାଉଛ?''

ସାରଦାଙ୍କର କାହିଁକି କେଜାଣି ଡର ଭୟ କମ୍ ହୋଇଗଲା। ସେ ଟିକିଏ ଆଶ୍ୱସ୍ତି ଲାଭ କଲେ। ହସି ହସି ମଧୁର ସ୍ୱରରେ କହିଲେ, ''ବାପା, ତୁମେ କଅଣ ମୋତେ ଚିହ୍ନିପାରୁ ନାହଁ? ମୁଁ ତୁମର ଝିଅ ସାରଦା। ତୁମର ଜ୍ୱାଇଁ ଦକ୍ଷିଣେଶ୍ୱର କାଳୀ ମନ୍ଦିରର ପୂଜାରୀ। ମୁଁ ତାଙ୍କ ପାଖକୁ ଯାଉଛି।''

ହଠାତ୍ ଡାକୁର ଭାବଭଙ୍ଗୀ ବଦଳିଗଲା। ସେ କହିଲା, ''ଝିଅ, ତୁ ବୋଧହୁଏ ରୋଗରେ ପଡ଼ି କ୍ଳାନ୍ତ ହୋଇଯାଇଛୁ। ପ୍ରଥମେ ମୋ ସହିତ ଘରକୁ ଚ୍ୱଲ। ଟିକିଏ ବିଶ୍ରାମ କରିବୁ।''

ଡାକୁ ତା ଘରକୁ ଆସି ତା ସ୍ତ୍ରୀକୁ କହିଲା, ''ଈଶ୍ୱର ଆଜି ପର୍ଯ୍ୟନ୍ତ ଆମକୁ ସନ୍ତାନ ଦେଇ ନାହାନ୍ତି, କିନ୍ତୁ ଆଜି ଅନ୍ନପୂର୍ଣ୍ଣା ପରି ସୁନ୍ଦରୀ ଝିଅଟିଏ ଆମ ପାଖକୁ ପଠାଇଛନ୍ତି। ଝିଅକୁ ଶୁଖିଲା ଲୁଗା ପିନ୍ଧାଇ ତାର ଖାଇବାର ବ୍ୟବସ୍ଥା କର।'' ଡାକୁ ପତ୍ନୀ କହିଲା, ''ଝିଅ, ଆମେ ଛୋଟ ଜାତିର ଲୋକ, ବୋଧହୁଏ ତୁ ଆମ ହାତ ରନ୍ଧା ଖାଦ୍ୟ ଖାଇବୁ ନାହିଁ। ମୁଁ ପାଖ ଗାଁରୁ ଜଣେ ବ୍ରାହ୍ମଣୀ ନାନୀଙ୍କୁ ଡାକିଆଣୁଛି।''

ସାରଦା ଉତ୍ତର ଦେଲେ, ''ନା, ମାଆ ! ତୋର ଜ୍ୱାଇଁ କୈବର୍ତ୍ତ (ଶୂଦ୍ର) ରାଣୀଙ୍କ ଦ୍ୱାରା ନିର୍ମିତ ହୋଇଥିବା ମନ୍ଦିରର ପୂଜାରୀ। ସେ କହନ୍ତି

ଯେ ଈଶ୍ୱରଙ୍କ ଘରେ ସମସ୍ତେ ସମାନ । ଅଧିକନ୍ତୁ ମୁଁ ତୁମର ଝିଅ, କାହିଁକି ମୁଁ ତୁମ ଘରେ ଖାଇବି ନାହିଁ?''

ଇତିମଧ୍ୟରେ ଆଖ ପାଖରୁ ପାଞ୍ଚ ଛଅ ଜଣ ସ୍ତ୍ରୀ ପୁରୁଷ ଆସି ପହଞ୍ଚିଗଲେ । ସମସ୍ତେ ଭୟଙ୍କର ଡାକୁ ଥିଲେ ସତ, କିନ୍ତୁ ତାଙ୍କ ସର୍ଦ୍ଦାରଙ୍କ ସ୍ନେହର ଝିଅ ସାରଦାଙ୍କ ସେବାରେ ସମସ୍ତେ ଲାଗିଗଲେ ।

ଡାକୁଙ୍କ ଘରେ ଖାଇ-ପିଇ ଟିକିଏ ସୁସ୍ଥ ଅନୁଭବ କରିବାରୁ ସାରଦା ଡାକୁଙ୍କୁ କହିଲେ, ''ବାପା, ଯଦି ମୁଁ ଯାତ୍ରୀମାନଙ୍କ ସହିତ କଲିକତା ନ ପହଞ୍ଚିବି, ତାହେଲେ ତୁମର ଜ୍ୱାଇଁ ବହୁତ ଚିନ୍ତିତ ହେବେ । ତେଣୁ ମୋତେ ଶୀଘ୍ର ତାରକେଶ୍ୱର ପର୍ଯ୍ୟନ୍ତ ପହଞ୍ଚାଇଦିଅ । ମୁଁ କଥା ଦେଉଛି, ଫେରିବା ବେଳକୁ ନିଶ୍ଚୟ ଏଠି ମୁହଁ ମାରି ଯିବି ।''



ଡାକୁ ସର୍ଦ୍ଦାର ଚାରିଜଣ ବଳିଷ୍ଠ କାନ୍ଧିଆଙ୍କୁ ଡକାଇଲା । ଝିଅ ସାରଦାଙ୍କୁ ପାଲିଙ୍କିରେ ବସାଇଲା । ତା' ପାଖରେ ଦେବା ପାଇଁ ତ ବିଶେଷ କିଛି ନଥିଲା, ତଥାପି ଝିଅକୁ ଖାଲିହାତରେ କେମିତି ବିଦା କରିବ! ତେଣୁ କିଛି ଚୁଡ଼ା ଓ ମଟର ଛୁଇଁ ଇତ୍ୟାଦି ଦେଇ ନିଜେ ପାଲିଙ୍କି ପାଖେ ପାଖେ ଚାଲିଲା । ପାହାନ୍ତା ପହରକୁ ସେମାନେ ତାରକେଶ୍ୱର ପାଖରେ ପହଞ୍ଚିଗଲେ ।

ସର୍ଦ୍ଦାର କହିଲା, ମାଆରେ! ଏଣିକି ମନ୍ଦିର ପର୍ଯ୍ୟନ୍ତ ତୋତେ ଏକୁଟିଆ ଯିବାକୁ ହେବ। କାରଣ ମୋତେ ଜୀବିତ ବା ମୃତ ଧରିଆଣିବା ଲୋକକୁ ସରକାର ପୁରସ୍କାର ଦେବାକୁ ଘୋଷଣା କରିଛନ୍ତି।

ବିଦାୟ ସମୟରେ ଡାକୁ ନିଜକୁ ସମ୍ଭାଳି ପାରିଲା ନାହିଁ। ତା ଆଖିରୁ ଲୁହ ବୋହି ଆସିଲା। ସେ କାନ୍ଦି କାନ୍ଦି କହିଲା, ଭଗବାନ ଏ ବୟସରେ ତୋ ପରି ଝିଅ ଓ ପୁଣ୍ୟାତ୍ମା ଜୋଇଁଟି ଦେଇଛନ୍ତି। ଆଉ ମୁଁ ଏ ହୀନ କାମ କରୁଛି! ଧିକ୍। ଆଉ ଏ କାମ କରିବି ନାହିଁ କି କାହାକୁ କଷ୍ଟ ଦେବି ନାହିଁ।

ତେଣେ ସାରଦାଙ୍କର ସହଯାତ୍ରୀମାନେ ତାଙ୍କୁ ନ ପାଇ ଅତ୍ୟନ୍ତ ବିଚଳିତ ହୋଇ ଖୋଜାଖୋଜି କରୁଥିଲେ। ସାରଦାଙ୍କୁ ଦେଖି ସେମାନେ ଆଶ୍ୱସ୍ତ ହେଲେ। ସେମାନେ ବୁଝିପାରୁ ନଥିଲେ ଯେ କିପରି ଦୁର୍ଦ୍ଦାନ୍ତ ଡାକୁଙ୍କ ପାଖରୁ ସାରଦା ଗହଣା ଓ ଲୁଗାପଟା ସହିତ ରକ୍ଷା ପାଇ ଚ୍ଚଲିଆସିଲେ।

ଦକ୍ଷିଣେଶ୍ୱରରେ ପହଞ୍ଚି ସାରଦା ଦେଖିଲେ ଯେ ତାଙ୍କ ସ୍ୱାମୀ ପାଗଳ ନୁହଁନ୍ତି, ବରଂ ସାଧାରଣ ପୂଜାରୀରୁ ପରମହଂସ ରାମକୃଷ୍ଣ ଭାବରେ ବିଖ୍ୟାତ ହୋଇଛନ୍ତି। କଲିକତାରୁ ଏବଂ ବାହାରୁ ଦୈନିକ ବହୁତ ମାନ୍ୟଗଣ୍ୟ ବ୍ୟକ୍ତି ତାଙ୍କୁ ଦର୍ଶନ କରିବା ପାଇଁ ଆସୁଛନ୍ତି ଏବଂ ତାଙ୍କର କଥାମୃତ ଶ୍ରବଣ କରୁଛନ୍ତି। ସାରଦା ସେତେବେଳେ ମାତ୍ର ବାଇଶି ବର୍ଷର ଜଣେ ନାରୀ ଥିଲେ, କିନ୍ତୁ ସେ ସମସ୍ତଙ୍କ ମାଆ ସାରଦା ଦେବୀ ହୋଇଗଲେ।

ନିଜ ସ୍ୱାମୀଙ୍କ ପାଖରୁ ବିଦାୟ ନେଇ ଯେତେବେଳେ ସେ ଜୟରାମବାଟୀ ଗ୍ରାମକୁ ଫେରିଲେ ପୂର୍ବ ପ୍ରତିଜ୍ଞା ଅନୁସାରେ ତେଲୋଭେଲୋ ଗ୍ରାମରେ ରହିଥିଲେ। ସେ ଦେଖିଲେ, ସେଠିକାର ବାତାବରଣ ବଦଳି ଯାଇଛି। ଲୋକେ ଡକାୟତି ଛାଡ଼ି କାମଧନ୍ଦାରେ ଲାଗିଛନ୍ତି। ଡାକୁମାନେ ଚ୍ଚୋରି କରିବା ପୂର୍ବରୁ ମାଆ କାଳୀଙ୍କର ପୂଜା ଓ ଆରାଧନା କରୁଥିଲେ। ଆଜି ମଧ୍ୟ ସେହି କାଳୀ ମନ୍ଦିର ସେଠାରେ ଅଛି।

ଆଜି ଆଉ ସେଠାରେ ଜଙ୍ଗଲ ନାହିଁ। ସେଠାରେ କାଳୀ ମନ୍ଦିରରେ ମା' କାଳୀଙ୍କର ପ୍ରତିମା ସହିତ ରାମକୃଷ୍ଣ ପରମହଂସ ଓ ମାଆ ସାରଦାଙ୍କ ଫଟୋ ମଧ୍ୟ ପୂଜା ପାଉଛନ୍ତି।



॥ ଜୟ ଶ୍ରୀଚନ୍ଦ୍ରମୌଳି ॥